ଅଧ୍ୟାପକ
ଶ୍ରୀ ଲକ୍ଷ୍ମଣ ପରିଡ଼ା
ଏମ୍.ଏ., ବି.ଇଡ଼ି.

# ଭକ୍ତି ସାହିତ୍ୟ ସମୀକ୍ଷଣ

# ଭଂଜ ସାହିତ୍ୟ ସମୀକ୍ଷଣ

ଲେଖକ:—

**ଅଧ୍ୟାପକ ଶ୍ରୀ ଲକ୍ଷ୍ମଣ କୁମାର ପରିଡ଼ା**

ଏମ୍. ଏ., ବି.ଇଡ଼.

ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ

ଭଞ୍ଜନଗର ମହାବିଦ୍ୟାଳୟ

ଭଞ୍ଜନଗର

ପ୍ରକାଶକ :

**ଶ୍ରୀ ଲୋକନାଥ ପରିଡ଼ା**

ଷଡ଼ାଙ୍ଗୋଇ, ପୁରୀ

ମୂଲ୍ୟ—ଟ୩-୨୫ ପଇସା

# ଉତ୍ସର୍ଗ

॥ ● ॥

ମୋର ● ସ୍ୱର୍ଗତ ପିତା

ଗୋବର୍ଦ୍ଧନ ପରିଡ଼ା

ଏବଂ

● ସ୍ୱର୍ଗତା ମାତା

ଅପର୍ଣ୍ଣା ଦେବୀ

ଙ୍କୁ······

॥ ନଇ ॥

●

# ସୂଚୀ

# ସାମାନ୍ୟ କଥନ

ଡକ୍ଟର ବେଣୀମାଧବ ପାଢ଼ୀ,
ଏମ୍.ଏ. ପି.ଏଚ୍.ଡି.
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ଅଧ୍ୟାପକ ଶ୍ରୀ ଲକ୍ଷ୍ମଣ କୁମାର ପରିଡ଼ାଙ୍କ ଦ୍ୱାରା ଲେଖା ଯାଇଥିବା ଉପେନ୍ଦ୍ର ଭଞ୍ଜ ସମ୍ବନ୍ଧୀ ସମାଲୋଚନା ଗ୍ରନ୍ଥଟି ଦେଖିଲି । ଯଦିଓ ଆମୂଳଚୂଳ ପଢ଼ିବାର ସୁବିଧା ନଥିଲି ତଥାପି ଗ୍ରନ୍ଥ ଭିତର ଅନେକାଂଶ ଦୃଷ୍ଟିକୁ ଆସିଛି । ଓଡ଼ିଆ ସାହିତ୍ୟରେ ଭଞ୍ଜଙ୍କର ଆସନ ଅପ୍ରତିଦ୍ୱନ୍ଦୀ । ତାଙ୍କର ବିରାଟ ବ୍ୟକ୍ତିତ୍ୱ, ବହୁଶାସ୍ତ୍ରଦର୍ଶିତା, ଅଗାଧ ପାଣ୍ଡିତ୍ୟ, ଅସରନ୍ତି କବିତ୍ୱ ପ୍ରତିଭା ଏକା ସେ ଯୁଗରେ ନୁହେଁ ଏ ଯୁଗରେ ମଧ୍ୟ ପାଠକକୁ ଚମତ୍କୃତ କରିପକାଏ । ଗୋଟିଏ କଥାରେ କହିଲେ ଭଞ୍ଜେ କେବଳ ବ୍ୟକ୍ତିବିଶେଷ ନୁହନ୍ତି ଏକ ବିରାଟ ଅନୁଷ୍ଠାନ । ତାଙ୍କର କାବ୍ୟିକ ଶୈଳୀ ଓ ଚମତ୍କାର ଅଳଙ୍କାର ବିନ୍ୟାସ ଅର୍ଦ୍ଧ ଦେଢ଼ଶହ ବର୍ଷ ପର୍ଯ୍ୟନ୍ତ ଓଡ଼ିଆ କବିମଣ୍ଡଳୀଙ୍କ ଆଦର୍ଶ ବିବେଚିତ ହୋଇ ଆସିଥିଲି । କିନ୍ତୁ ଛୋଭର ବିଷୟ ତାଙ୍କ କାବ୍ୟକୃତି ସମ୍ବନ୍ଧରେ କୌଣସିମତେ ଏକ ପ୍ରାମାଣିକ ଗ୍ରନ୍ଥ ଏଯାଏଁ ରଚିତ ହୋଇପାରି ନାହିଁ । ଖାଲି ସେତିକ ନୁହେଁ, ତାଙ୍କ କାବ୍ୟର ତତ୍ତ୍ୱ ହୃଦୟଙ୍ଗମ କରି ତଦିତ୍ୟ ବୈଶିଷ୍ଟ୍ୟ ସମ୍ବନ୍ଧରେ ସୁଦ୍ଧା କେହି ଚେଷ୍ଟିତ ଥିବା ଜଣାପଡ଼େ ନାହିଁ । ସେ ଦୃଷ୍ଟିରୁ ବିଚାର କଲେ ସମୁଦ୍ରକୁ ଶଙ୍ଖେ ହେଲେ ସୁଦ୍ଧା ଅଧ୍ୟାପକ ପରିଡ଼ାଙ୍କ ଉଦ୍ୟମ ସର୍ବଦା

ପ୍ରଶଂସମାପ୍ତ । ସେ ଏଥିରେ ଆଠଟି ବିଭିନ୍ନ ଦୃଷ୍ଟିଭଙ୍ଗୀ ଧରି ଆଠଟି ପ୍ରବନ୍ଧ ସନ୍ନିବେଶ କରିଛନ୍ତି । ସବୁଗୁଡ଼ିକର ବୈଶିଷ୍ଟ୍ୟ ରହିଛି; ବୈଚିତ୍ର୍ୟ ବି ରହିଛି । ଭାଷା ପ୍ରୟୋଗରେ ଲେଖକ ଆଉ ଟିକିଏ ସତର୍କ ଦୃଷ୍ଟି ରଖିଥିଲେ ଗ୍ରନ୍ଥଟି ଆହୁରି ଉଚ୍ଚକୋଟୀର ହୁଅନ୍ତା ବୋଲି ମନେହୁଏ । ଉଦ୍ଧୃତିଗୁଡ଼ିକୁ କମାଇଦେଇ ସାଙ୍କେତିକ ସୂତ୍ର ଗ୍ରହଣ କରିବାର ବି ଆବଶ୍ୟକତା ଥିଲା । ଅବଶ୍ୟ ଏହାଦ୍ୱାରା ଗ୍ରନ୍ଥର କଳେବର ବୃଦ୍ଧି ସଙ୍ଗେ ସଙ୍ଗେ ବକ୍ତବ୍ୟର ସ୍ପଷ୍ଟ ପ୍ରକାଶନ କରିହୁଏ । ଫଳରେ ତୁଳନାତ୍ମକ ବିଚାରର ପନ୍ଥା ସୁଗମ ହୁଏ । ଗ୍ରନ୍ଥଟି ମୋଟାମୋଟି ଯୁଗୋପଯୋଗୀ ହୋଇପାରିଛି । ପରୀକ୍ଷାର୍ଥୀଙ୍କ ସକାଶେ ଏହାର ଯଥେଷ୍ଟ ଉପଯୋଗିତା ଥିଲାପରି ବୁଝାପଡ଼େ । ଆଜିର ବସ୍ତୁବାଦୀ ସାହିତ୍ୟ ଯୁଗରେ ଅତୀତର କଳ୍ପନା ପ୍ରଧାନ ସାହିତ୍ୟର ଆଲୋଡ଼ନ କରି ଲେଖକ ଯେଉଁ କାବ୍ୟପ୍ରୀତିର ନିଦର୍ଶନ ରଖିଗଲେ ତାହା ଅନ୍ୟମାନଙ୍କର ଅନୁକରଣୀୟ ହୋଇ-ପାରିଲେ ଅନ୍ତତଃ ବିସ୍ମୃତ ସାହିତ୍ୟର ପୁନଃପ୍ରକାଶନରେ ସହାୟକ ହୋଇପାରନ୍ତା । ମୋର ଆନ୍ତରିକ ଆଶା ଲେଖକ ତାଙ୍କ ଲେଖମା ସୃଜନାରୁ ବିରତ ହେବେନାହିଁ ଏବଂ ତାଙ୍କ ସାହିତ୍ୟିକ ଲକ୍ଷ୍ୟ ପୂରଣ ଦିଗରେ ସର୍ବଦା ସଚେଷ୍ଟ ରହିବେ । ଈଶ୍ୱର ତାଙ୍କ କର୍ମର ସଫଳତା ପାଇଁ ସର୍ବଦା ସହାୟକ ହେବେ ।

ଶୁଭେଚ୍ଛୁ

**ବେଣୀମାଧବ ପାଢ଼ୀ**

୨ । ୩ । ୭୩

# ମୁଖବନ୍ଧ

ବିଗତ ତେର ବର୍ଷ ତଳେ ଶେଷ ହୋଇଥିବା ମୋର ଜୀବନାଂଶ—ଛାତ୍ରାବସ୍ଥାରେ କେବଳ ଭଂଜଭୂମି ନୁହେଁ, ଭଂଜଙ୍କ-ଠାରୁ ମଧ୍ୟ ମୁଁ ଅନେକ ଦୂରରେ ଥିଲି । ହୋଇପାରେ, ମୋର କୌଣସି ଶିକ୍ଷାଗୁରୁଙ୍କର ସମାଲୋଚନା ପ୍ରଭାବରୁ ଅବା କୌଣସି ଭ୍ରାନ୍ତ ପ୍ରଚାର ହେତୁ ଅଥବା ଛାତ୍ର ଜୀବନର ତତ୍କାଳ ପାଠ୍ୟ ପୁସ୍ତକର ପ୍ରଭାବ ଫଳରେ, ମୁଁ ଭଂଜଙ୍କୁ ଭୁଲ୍ ବୁଝିଥିଲି । ଭଂଜେ ମୋଠାରୁ ଅନେକ ଦୂରରେ ଥିଲେ । ସେ ଥିଲେ ସେତେବେଳେ ମୋ ପାଇଁ ଏକ ବିରାଟ ଆତଂକ । ମାତ୍ର ଭଂଜ ସାହିତ୍ୟ ପ୍ରତି ମୁଁ ଆଜି ଅତି ବେଶୀ ଋଣୀ । ଛାତ୍ର ଜୀବନ ସରିଗଲା ପରେ ଘଟଣାକ୍ରମେ ମୋର କର୍ମକ୍ଷେତ୍ର ହେଲା ଏଇ ଭଂଜଭୂମି । ଅଜ୍ଞାନର ଅଂଧକାର ଭିତରେ ମୁଁ ଯେଉଁ ସୁରମ୍ୟ ବଟ ବୃକ୍ଷକୁ ଭୂତ ବୋଲି ଭାବିଥିଲି, ସେ ଭୟ ମୋର ଦୂର ହୋଇଗଲା । ମୁଁ ଭଂଜଂକର ନିକଟତର ହେବାକୁ ଚେଷ୍ଟା କଲି । ଦେଖିଲି, ମନରୁ ଭଂଜ ଭୟ କେବେଠାରୁ ଦୂର ହୋଇସାରିଛି । ବରଂ ମୁଁ ଭଂଜଙ୍କୁ ଭଲ ପାଇ ବସିଛି ।

ତା'ପରେ ମନରେ ଅନେକ ଅନୁସନ୍ଧିତ୍ସା ଜାଗ୍ରତ ହୋଇଛି । ଭଂଜଙ୍କୁ ନୂଆ ଭାବରେ ଆବିଷ୍କାର କରିବାର ମୋହ ମୋତେ ବ୍ୟସ୍ତ, ବିବ୍ରତ କରିଛି । ମୋ' ପ୍ରଦେଶର ସର୍ବଶ୍ରେଷ୍ଠ କବି, ଯେ କି କବିସମ୍ରାଟ—ତାଙ୍କ ପ୍ରତି ମୋର ପ୍ରଗାଢ଼ ପ୍ରୀତି ମୋତେ ତାଙ୍କୁହିଁ ସମାଲୋଚନା କରିବା ନିମିତ୍ତ ନୂତନ ଉନ୍ମାଦନା ଦେଇଛି ।

ଏବଂ ତାଙ୍କର ବିରାଟ ସୀମାହୀନ ସାହିତ୍ୟ-ସମୁଦ୍ର ତୀରରେ ନିଜଟମାୟୁ ଥିଓସ୍ଥ ଅବଲମ୍ବନ କରି ମୁଁ ହୁଏତ କହିବି, ମୁଁ କେତେଗୋଟି ଉପଳଖଣ୍ଡ ମାତ୍ର ସଂଗ୍ରହ କରି, ଏହି ପୁସ୍ତକରେ ସନ୍ନିବେଶିତ କରିଛି । ଭଂଜ ସାହିତ୍ୟର ସାମଗ୍ରିକ ଚିତ୍ର ଦେବା ବା ସାମଗ୍ରିକ ମୂଲ୍ୟାଙ୍କନ କରିବା— ତା' ହୁଏତ ଗବେଷଣାର ବିଷୟ—ଆୟାସସାଧ୍ୟ ନିଶ୍ଚୟ । ତେଣୁ ମୋର ଏ ପ୍ରଚେଷ୍ଟା ଭଂଜ ସାହିତ୍ୟର ସାମାନ୍ୟ କେତେକ ବିଭବ ଉପରେ । ତା ପୁଣି ଭାବାଗତ ବିସ୍ତୃରରେ ଯଥେଷ୍ଟ ସୀମିତ ।

ଭଂଜୀୟ ଭାବରାଜ୍ୟକୁ ମୁଁ ଯଦି ଅଗଣିତ ତାରା ଏବଂ ଚନ୍ଦ୍ର ସମାହାରିତ ଆକାଶକୁ ବୁଝେ, ତେବେ ମୋର ଏ ପୁସ୍ତକଟି ଏକ କ୍ଷୁଦ୍ରତମ ପୁଷ୍କରଣୀ—ଯା ଭିତରେ ବିରାଟ ଓ ବ୍ୟାପକ ଆକାଶର ସୀମିତ ଅଂଶ ଖାଲି ପ୍ରତିବିମ୍ବିତ ମାତ୍ର ହୋଇଛି; ତା' ବି ଅସ୍ପଷ୍ଟ ହୋଇଥାଇପାରେ । ବିଜ୍ଞାନ ସମ୍ମତ କଥାରେ କହିଲେ ହୁଏତ ବିରାଟ ଚନ୍ଦ୍ର ଉପଗ୍ରହରୁ ମୁଁ ମୋର ଏହି ପୁସ୍ତକର ଆପୋଲୋରେ ହୁଏତ କେତେ ପାଉଣ୍ଡ ମାତ୍ର ମାଟି ନେଇଆସି ରଖିଛି—ଅଗଣିତ ବିଜ୍ଞାମ ପାଠକଂକ ବିଚାର ପାଇଁ ।

ଏ ପୁସ୍ତକଟି ରଚନା ଦିଗରେ ମୁଁ ମୋର ଅନେକ ବନ୍ଧୁ ଏବଂ ସହକର୍ମୀମାନଙ୍କଠାରୁ ଯେଭଳି ପ୍ରେରଣା ଓ ଉତ୍ସାହ ଲାଭ କରିଛି, ସେମାନଙ୍କର ନାମୋଲ୍ଲେଖ ଏଠାରେ ନ କଲେ ହୁଏତ ଅନ୍ୟାୟ କରିବସିବି । ବିଧାନ ସଭା ସଦସ୍ୟ ଶ୍ରୀ ସୋମନାଥ ରଥଙ୍କ ପ୍ରେରଣା ଏହି ପୁସ୍ତକଟି ଲେଖିବା ନିମିତ୍ତ ଅନୁପ୍ରେରିତ କରିଛି, ତା' ମୁଁ କେବେ ଭୁଲି ପାରିବିନି । ତାଙ୍କ ବ୍ୟତୀତ ଭଂଜନଗରର ବିଶିଷ୍ଟ ଭଂଜପ୍ରେମୀ ଶ୍ରୀଯୁକ୍ତ ଶ୍ରୀଧର ଶତପଥୀ, ବ୍ରଜବାସୀ ଗଦାଧର

ଦାସ, ଶ୍ରୀଯୁକ୍ତ ଉମାକାନ୍ତ ମିଶ୍ର (ଆଡ଼ଭୋକେଟ୍), ଶ୍ରୀଯୁକ୍ତ ନିରଞ୍ଜନ ତ୍ରିପାଠୀ, ଶ୍ରୀଯୁକ୍ତ ପ୍ରଭାତ କୁମାର ଦାସ ଓ ଶ୍ରୀଯୁକ୍ତ ଉଦୟନାଥ ମହାପାତ୍ର ମଧ୍ୟ ମୋତେ ପ୍ରଗାଢ଼ ପ୍ରେରଣା ଦେଇ ଉତ୍ସାହିତ କରିଛନ୍ତି ।

ଭଂଜନଗର ମହାବିଦ୍ୟାଳୟର ଅଧ୍ୟକ୍ଷ ଶ୍ରୀଯୁକ୍ତ ଅମୂଲ୍ୟ କୃଷ୍ଣ ମିଶ୍ର ଏବଂ ସହକର୍ମୀ ବନ୍ଧୁ ଶ୍ରୀଯୁକ୍ତ ଦଣ୍ଡପାଣି ବେହେରା, ଶ୍ରୀଯୁକ୍ତ ପି. ଶଙ୍କର ନାରାୟଣ ପାତ୍ର, ଶ୍ରୀଯୁକ୍ତ କୃଷ୍ଣମୋହନ ଦାସଙ୍କୁ ମଧ୍ୟ ମୁଁ ଏ ଦିଗରେ କେବେ ଭୁଲିପାରିବିନି—କାରଣ ସେମାନେ ହିଁ ମୋତେ ବର୍ଷ ବର୍ଷ ଧରି ଭଂଜଙ୍କୁ ପ୍ରଗାଢ଼ ଭାବେ ଭଲ ପାଇବାକୁ ଉଦ୍ଦୀପନା ପ୍ରଦାନ କରିଛନ୍ତି ।

ବାଣୀ ବିହାରର ପ୍ରାଧ୍ୟାପକ ଡ଼ଃ ବଂଶୀଧର ମହାନ୍ତି, ଅଧ୍ୟାପକ ବାସୁଦେବ ସାହୁ ଏବଂ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଡ଼କ୍ଟର ବେଣୀମାଧବ ପାଢ଼ୀ, ଅଧ୍ୟାପକ ସୀତାରାମ ମହାପାତ୍ର, ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟ—ଏମାନେ ସମସ୍ତେ ଭଂଜ ଅନୁରାଗୀ ଏବଂ ଏମାନେ ସମସ୍ତେ ମୋର କର୍ମଭୂମି ଭଂଜନଗର ହୋଇଥିବାରୁ ଭଂଜଙ୍କର ସମ୍ପର୍କରେ ବ୍ୟାପକ ଗବେଷଣା କରିବା ପାଇଁ ପ୍ରତ୍ୟେକ ସାକ୍ଷାତ୍‌ରେ ପ୍ରେରଣା ଦେଇଛନ୍ତି, ପ୍ରଶ୍ନ କରିଛନ୍ତି । ସେମାନଙ୍କର ପ୍ରେରଣା ଏବଂ ପ୍ରଶ୍ନର ପାହାଚ ଉପରେ ମୁଁ କ୍ରମଶଃ କଣ୍ଟିବାଟ ଉପରକୁ ଉଠି ଆଜି ଏଇ ପୁସ୍ତକଟି ରଚନା କରିଛି । ଭବିଷ୍ୟତରେ ଆହୁରି ଅନେକ ରଚନା କରିବାର ବାସନା ରହିଲା ।

ଏବଂ ପରିଶେଷରେ ମୋର ସହକର୍ମୀ ତଥା ଅନ୍ତରଙ୍ଗ ବନ୍ଧୁ—ଅଧ୍ୟାପକ ନିଶାକର ପାଢ଼ୀ ଓ ଅଧ୍ୟାପକ ବିଜୟ କୁମାର

।

ପଟ୍ଟନାୟକ—ସେମାନଙ୍କ ସାହାଯ୍ୟ ସହାନୁଭୂତି ଉଲ୍ଲେଖ ନ କଲେ ଏ ପୁସ୍ତକ ରଚନା ଦିଗରେ ମୋର ମାନସିକ ସାନ୍ତ୍ୱନା ମଧ୍ୟ ହରାଇ ବସିବି । କାରଣ, ସେମାନେ ମୋତେ ମାଧ୍ୟମ କରି ଇଂରଜଙ୍କୁ ଭଲଭାବେ ଜାଣିବାର ଯେଉଁ ଗଭୀର ଅନ୍ୱେଷା ପ୍ରକାଶ କଲେ, ତାହାହିଁ ମୋତେ ଏ ପୁସ୍ତକ ରଚନା ଦିଗରେ ପ୍ରଥମ ପ୍ରେରଣା ଦେଇଛି—ଆଜି ଏ ପୁସ୍ତକର ପ୍ରତିଟି ପୃଷ୍ଠା ସେମାନଙ୍କର ସାହାଯ୍ୟ ସହାନୁଭୂତି ଲାଭ କରି କେତେକ ମାତ୍ରାରେ ବୁଦ୍ଧିମନ୍ତ ବୋଲି ମୁଁ ଅନ୍ତତଃ ମନେକରେ ।

ଉପର୍ଯ୍ୟୁକ୍ତ ସମସ୍ତ ସ୍ଥାନୀୟ ଇଂରଜପ୍ରେମୀ ଭଦ୍ରବ୍ୟକ୍ତି, ଛାତ୍ର ବନ୍ଧୁ ଓ ସହକର୍ମୀମାନଙ୍କୁ ମୁଁ ଗଭୀର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ଅଧ୍ୟାପକ ଲକ୍ଷ୍ମଣ କୁମାର ପରିଡ଼ା

—o—

# ଭଂଜଙ୍କର ଭୋଗତ୍ରେ

# ଏକାଦଶସ୍କନ୍ଧର ୟୋଗ

କବି ସମ୍ରାଟ୍, କବି-କୁଳ-ତିଳକ, କବି ସାର୍ବଭୌମ ଉପେନ୍ଦ୍ର, ପରବର୍ତ୍ତୀ ଓ ତାଙ୍କର ସମସାମୟିକ କବିମାନଙ୍କୁ ଯେତିକି ପ୍ରଭାବିତ କରି ଅଛନ୍ତି, ସେତିକି ମଧ୍ୟ ସେ ଅନ୍ୟ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ସଂସ୍କୃତ ଷଟ୍‌କାବ୍ୟକାରମାନଙ୍କର ପ୍ରଭାବ ତାଙ୍କର କାବ୍ୟ କବିତାରେ ସ୍ପଷ୍ଟ ମୁଦ୍ରାଙ୍କିତ ହୋଇଅଛି । ଏହା ବ୍ୟତୀତ ଭଞ୍ଜ ପୂର୍ବବର୍ତ୍ତୀ ଓଡ଼ିଆ ପୁରାଣ ଓ କାବ୍ୟ କବିତାର ପ୍ରଭାବ ମଧ୍ୟ ତାଙ୍କ କାବ୍ୟ ସମୂହରେ ଅନସ୍ୱୀକାର୍ଯ୍ୟ । ଓଡ଼ିଆ ଭାଗବତକାର ଜଗନ୍ନାଥ ଦାସଙ୍କ ଯଦୁ ଅବଧୂତ ସମ୍ବାଦର ଏକ ପଂକ୍ତିର ଭାବ ତାଙ୍କ କାବ୍ୟର ଅଧିକାଂଶ ସ୍ଥଳରେ ସୂଚିତ । କିନ୍ତୁ ପ୍ରତିଭାଶାଳୀ କବିର ସ୍ୱକୀୟ ଚିନ୍ତାଧାରାରେ ତାହା ଯେପରି ସ୍ପଷ୍ଟୀକୃତ, ବ୍ୟକ୍ତିତ୍ୱର ସ୍ୱାତନ୍ତ୍ର୍ୟରେ ସେହିପରି ମହିମାନ୍ୱିତ । ମନେହୁଏ ଦୃଷ୍ଟିକୋଣର ନୂତନତ୍ୱରେ ତାହା ଯେପରି ପ୍ରତିଭାତ, ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ବହନରେ ତାହା ମଧ୍ୟ ଦୀପ୍ତିମନ୍ତ । ଗୋଟିଏ ପଦାର୍ଥର ଢାଞ୍ଚା କବିର ପ୍ରତିଭା, ବ୍ୟକ୍ତିତ୍ୱ, ମୌଳିକତ୍ୱ ନେଇ ପରିବେଷଣ ଗୁଣରେ ହୁଏ ଚମତ୍କୃତ । ପ୍ରତିଭାର ଅନ୍ୟ ନାମ ହେଉଛି ନୂତନତ୍ୱ । ଏହା କବିର ସୂକ୍ଷ୍ମ ଦର୍ଶନ-ଶକ୍ତିର ପରିସର ଉପରେ ଓ ଦୃଷ୍ଟିକୋଣର ନୂତନତ୍ୱ ବା ଭିନ୍ନତା ଉପରେ ସଂପୂର୍ଣ୍ଣ ନିର୍ଭର କରେ । ଉତ୍କୃଷ୍ଟ ପୁସ୍ତକ ବା କାବ୍ୟ, କବି ବା ଲେଖକଙ୍କର ମୌଳିକ-ଚିନ୍ତା ଓ

ସ୍ୱାଧୀନ ଭାବଧାରାର ସୂଚକ । କବିର ବଳିଷ୍ଠ ବ୍ୟକ୍ତିତ୍ୱ ପ୍ରତିଭା ବଳରେ ଭାବାନୁଭୂତିକୁ ଅନ୍ୟଠାରୁ ଭିନ୍ନ ଭାବରେ କାବ୍ୟ-କଳାରେ ପ୍ରକାଶ କରିଥାଏ । ଏକାଦଶସ୍କନ୍ଧର ଯଦୁ ଅବଧୂତ ସମ୍ବାଦର "କପୋତ ପକ୍ଷୀ ବୃତ୍ତାନ୍ତ"କୁ ଯୋଗୀ କପରି ଭାବରେ ଗ୍ରହଣ କରିଛନ୍ତି ଓ ଭୋଗୀ ଉପେନ୍ଦ୍ରଙ୍କ ଦ୍ୱାରା ଦୃଷ୍ଟିକୋଣର ଭିନ୍ନତା ନେଇ—ସେହି ଏକ ବିଷୟବସ୍ତୁ କପରି ଅନ୍ୟ ରୂପେ ପରିବେଷ୍ଟିତ ହୋଇଛି, ତାହା ଦର୍ଶାଇବା ହେଲା, ଏ ପ୍ରବନ୍ଧର ଏକାନ୍ତ ଆଭିମୁଖ୍ୟ ।

ଅବଧୂତଙ୍କର ୨୪ ଗୁରୁମାନଙ୍କ ମଧ୍ୟରୁ କପୋତ ପକ୍ଷୀ ଅନ୍ୟତମ । କପୋତ ପକ୍ଷୀ କପୋତୀ ସହିତ ଅରଣ୍ୟ ମଧ୍ୟରେ ସଙ୍ଗ ଜୀବନ ଯାପନ କରି ଦୃଢ଼ଭାବରେ ପ୍ରୀତି ପାଶରେ ଆବଦ୍ଧ ହୋଇ-ଥିଲେ । ଲବେ ମାତ୍ର ବିରହ ବିଚ୍ଛେଦ ଜନିତ ଦୁଃଖ ଅନୁଭବ କରୁ ନଥିଲେ । ଇତ୍ୟବସରେ କପୋତୀ ଗର୍ଭବତୀ ହେଲା । କପୋତ ସ୍ତ୍ରୀର ଇଚ୍ଛା ପୂରଣରେ ତତ୍ପର ହେଲା । କାଳକ୍ରମେ ଦୁଇଟି ପୁରୁଷ ପକ୍ଷୀର କପୋତ ଓ କପୋତୀ ଦୁହେଁ ପିତା ମାତା ହେଲେ । ଶାବକମାନଙ୍କ ପ୍ରତି ମାୟା ମମତା ଉଭୟଙ୍କର ବଢ଼ିଲା । କପୋତ ଓ କପୋତୀ ଦୂର ଅରଣ୍ୟଗାମୀ ହୋଇଥିଲେ । ପ୍ରତ୍ୟାବର୍ତ୍ତନ କରି ଦେଖିଲେ ଯେ ସେମାନଙ୍କର ଶାବକ ଦୁଇଟି ବ୍ୟାଧର ଜାଲରେ କବଳିତ । ବତ୍ସଳତାରେ ଅନ୍ଧୀଭୂତ ହୋଇ, କପୋତୀ ବ୍ୟାଧର ଜାଲବଦ୍ଧ ଓ କପୋତ ପତ୍ନୀର ମମତା ମାୟାରେ ବନ୍ଦୀ ହୋଇ ବ୍ୟାଧର ଜାଲରେ ଧୃତ ହୋଇଛନ୍ତି । ଭାଗବତକାର ରୂପକ କଥା ଜରିଆରେ ଅବଧୂତଙ୍କ ଗୁରୁକରଣରେ ସଂସାରୀମାନଙ୍କୁ ନୀତି ଉପଦେଶ ଦେଇଛନ୍ତି:—

ଅଧିକ ସଂସାର ସଙ୍ଗତେ ।
ପୀରତି ନ କରିବ ଚିତ୍ତେ ॥
ଯେବେ କରିବ ସ୍ନେହ ଆଶ ।
କପୋତ ପ୍ରାୟେ ଯିବ ନାଶ ॥

(ଏକାଦଶସ୍କନ୍ଧ—ଯଦୁ ଅବଧୂତ ସମ୍ବାଦ)

ଏଣୁ ସଂସାର ପ୍ରତି ନିରାସକ୍ତ, ତତ୍ତ୍ୱଦର୍ଶୀ, ଆତ୍ମାଭିମୁଖୀ ସନ୍ନ୍ୟାସୀ ଅବଧୂତ କପୋତ ପକ୍ଷୀକୁ ଗୁରୁକରି ତାହାଠାରୁ ସଂସାର 'ବିରାଗ' ଭାବ ଶିକ୍ଷା କରିଥିଲେ । ମାତ୍ର ଯେହେତୁ ଜଗନ୍ନାଥ ଦାସ ଭଞ୍ଜଙ୍କର ପୂର୍ବବର୍ତ୍ତୀ କବି, ତାଙ୍କର ଉପଯୁକ୍ତ ପଂକ୍ତିର ପ୍ରଭାବ ଅନ୍ୟ ରୂପ ଗ୍ରହଣ କରିଛି, ସଂସାରୀ କବି ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟକଳାର ସୃଷ୍ଟିରେ । ଏକ ପଦାର୍ଥ, କିନ୍ତୁ ସ୍ୱକୀୟ ସୃଜନଶକ୍ତି ବଳରେ ତାହା ଯେପରି ସ୍ୱତନ୍ତ୍ର ଭାବରେ ପ୍ରତିଭାତ ହୋଇଥାଏ, ପ୍ରତିଭାଶାଳୀ ଉପେନ୍ଦ୍ର ସେହି କପୋତ ପକ୍ଷୀର ବୃତ୍ତାନ୍ତକୁ ଅନ୍ୟ ରୂପରେ ଗ୍ରହଣ କରିଅଛନ୍ତି । ଜଗନ୍ନାଥ ଦାସ ଯେଉଁଠାରେ "ପ୍ରେମ-ବିରାଗୀ ହେବାକୁ ନିର୍ଦ୍ଦେଶ ଦେଇଛନ୍ତି, ଉପେନ୍ଦ୍ର ଭଞ୍ଜ ସେଠାରେ 'ପ୍ରେମ-ସରାଗୀ' ହେବାକୁ ଆଦେଶ ଦେଇଛନ୍ତି । ଜଗନ୍ନାଥ ଦାସ ଯେଉଁଠାରେ ସଂସାର ପ୍ରତି ନିରାସକ୍ତ ହେବାକୁ କହିଛନ୍ତି, ସେଠାରେ ଉପେନ୍ଦ୍ର ସଂସାର ପ୍ରତି ଆସକ୍ତ ହେବାକୁ ଗୁହାରିଛନ୍ତି । ପ୍ରୀତି ପ୍ରତ୍ୟାହାର କରିବାକୁ ଯୋଗ ମାର୍ଗରେ ଯୋଗୀ ଯେତେବେଳେ ସୂଚନା ଦେଇଛନ୍ତି, ଭୋଗୀ ସେତେବେଳେ ପ୍ରେମରେ ପ୍ରମତ୍ତ ବା ପ୍ରବୃତ୍ତିତ ହେବାର ଚେତନା ଦେଉଛି । ଏଣୁ ଭାଗବତର ସେଇ କପୋତ ରୂପକ କଥାକୁ ନେଇ ଉପେନ୍ଦ୍ର କହିଅଛନ୍ତି:—

(କ) 'ରକ୍ତରେ ହତ, ପକ୍ଷୀ କପୋତ,
ରହୁ ତାରପର ମୋର ଚରିତ' (ର. ପ)

(ଖ) ପ୍ରୀତିରେ ପକ୍ଷୀ ମଲା    ପ୍ରୀତିରେ ଦ୍ରବେ ଶିଳା
ମୁହିଁ ତୋ ପ୍ରୀତି ପରାଧୀନା
ପ୍ରୀତି ଚରମଧନ    ପାଇ ଯା ହେଲ ଭିନ୍ନ
କ ଦୋଷେ ଏ ଯାତନା ହେଲା (ର. ଲେ.)

(ଗ) ସାରସ୍ୱତ ଦ୍ରବ୍ୟ ପୀରତି ସଂସାରେ
ତହିଁ ଯାହା ଚଉ ଲଭଇ ।
ସ୍ୱର୍ଗ ସମ୍ପତ୍ତି ହନକେ ସେ ଏଥିର
ସେହ୍ନ ତାକ ପିନା ଲଭଇ ।
ସୁଜ୍ଞ ରସିକେ, ସାମନ୍ତ ପ୍ରାୟ ସେ ଶୋଭଇ
ସ୍ନେହାନୁବନ୍ଧେ ପକ୍ଷୀ ବେନି ବିନାଶ
ଆଜ ଧନ୍ୟବାଣୀ ଶୁଭଇ ।' (ସୁ. ପ.)

ଏଣୁ 'କ'ର "ପକ୍ଷୀ କପୋତ", 'ଖ'ର 'ପକ୍ଷୀ ମଲା' ଓ 'ଗ'ର 'ପକ୍ଷୀ ବେନି' ଏ ସମସ୍ତ ଏକାଦଶସ୍କନ୍ଧର ସେହ୍ନ କପୋତ କପୋତୀ ପକ୍ଷୀ ଭିନ୍ନ ଅନ୍ୟ କେହ୍ନ କି ? ସଂସାର ବୈରାଗୀ ଯୋଗୀ ଏକାଦଶସ୍କନ୍ଧକାର ଯେତେବେଳେ ଅଧିକ ପ୍ରୀତି ପ୍ରବଣ ନ ହେବାକୁ କହି ସଂସାରରେ ନିର୍ଲିପ୍ତ ହେବାକୁ କହୁଅଛନ୍ତି, ସେତେବେଳେ ଭୋଗୀ ଉପେନ୍ଦ୍ର ପ୍ରୀତି ପ୍ରତି ଅଧିକ ଲିପ୍ତ ହେବାକୁ କହୁନାହାନ୍ତି କି ? ଏକ ବସ୍ତୁ ପ୍ରୀତି; ତାହା 'ଯୋଗ' ଓ 'ଭୋଗ'ରେ କିପରି

ଅନ୍ୟ ରୂପ ଗ୍ରହଣ କରନ୍ତି, ତାହା ବର୍ଣ୍ଣନ କରିବାର କଥା । କପୋତ କପୋତୀଙ୍କର ପ୍ରେମାସକ୍ତ ଜୀବନକୁ ଧନ୍ୟ ମନେକରି ତାଙ୍କପରି ଦାମ୍ପତ୍ୟ ବନ୍ଧନ ସମ୍ପର୍କରେ ଦୃଢ଼ତା ରକ୍ଷା କରିବାକୁ କହି ଉପେନ୍ଦ୍ର କହିଅଛନ୍ତି:—

(କ) "ମୁଁ ସଂସାର ପାରାବାର ପାରିବାକୁ ସଖୀ ପ୍ରୀତି ରୀତିରେ"
ପୀରତିରୁ ଜାତ ସଂସାରେ ନାହିଁ ପୁଣ । (ର. ଲେ.)

ସେତିକି ନୁହେଁ, ପ୍ରୀତିର ମାହାତ୍ମ୍ୟ ପ୍ରକୀର୍ତ୍ତନ କରିବାକୁ ଯାଇ, ଉପେନ୍ଦ୍ର କହିଛନ୍ତି—

(ଖ) "ପଶୁ ପକ୍ଷୀ ବଶ ହୋନ୍ତି ଏ ରସେ
ଯେହୁ ପାଷାଣ ସେ ଏଥି ନ ରସେ ।"

ପୁଣି ପ୍ରୀତି ଓ ରତିରେ ଅଭେଦ ସମ୍ପର୍କ ଓ ନିଗୂଢ଼ ସମ୍ବନ୍ଧ ସୂଚାଇ ଉପେନ୍ଦ୍ର କହିଛନ୍ତି:—

(ଗ) ପରମ ଦ୍ରବ୍ୟ ପୀରତି ପରମ ସୁଖ ସୁରତି
ରତିରୁ ଜାତ ପୀରତି, ପ୍ରୀତିରୁ ରତି ଯେ । (ପ୍ର. ସୁ.)

ଯୋଗରେ ସ୍ତ୍ରୀ ବା ପ୍ରକୃତିକୁ ଯେଉଁଠାରେ ମାୟାର ଏକ ରୂପ ରୂପେ କଳ୍ପନା କରାଯାଇ ତାହା ସହିତ କାମିକ ସମ୍ପର୍କ ଓ ଇନ୍ଦ୍ରିୟ ସମ୍ପର୍କ ସ୍ଥାପନ କରିବା ନିମନ୍ତେ ବାରଣ କରାଯାଇଛି, ଯେଉଁଠାରେ ଯୋଗ ମାର୍ଗରେ 'ଜନ୍ମାନ୍ତରବାଦ'ର ପୂର୍ଣ୍ଣ ଯବନିକା ଟଣା ଯାଇଛି; ଯୋଗୀ

ଉପେନ୍ଦ୍ର ସେଠାରେ ଜନ୍ମେ ଜନ୍ମେ ସୁନ୍ଦରୀ ସ୍ତ୍ରୀର ସାନ୍ନିଧ୍ୟଲାଳସୀ ହୋଇ ଗାଇଅଛନ୍ତି—

"ଯେତେ ଜନ୍ମେ ଯେତେ ପୁଣ୍ୟ କରିଛୁ ମୁଁ ଫଳ
ମିଳିଥିବଟି ସୁନ୍ଦରୀ ମେଳ ଥିବା କାଳେ ଯେ ।" (ଲ.ବ.)

ଉପେନ୍ଦ୍ର ଭଞ୍ଜ ଥିଲେ ଦାମ୍ପତ୍ୟ ଜୀବନର ପକ୍ଷପାତୀ । ଦାମ୍ପତ୍ୟ ପ୍ରଣୟ ଯେ ଶ୍ରେଷ୍ଠ, ଏହା କହିବାକୁ ଯାଇ ସେ ଲେଖିଛନ୍ତି—

"କି ହେବ ଇନ୍ଦ୍ର ହୋଇଲେ ସର୍ବ ସମ୍ପତ୍ତି ସେ
ସ୍ତ୍ରୀ ଶ୍ରୀ ସ୍ଥାନଠାରୁ ପାଉ୍ରୀ ନାହିଁ ମହୀ ଦେଶେ ।" (ଲ.ବ.)

ପୁଣି:—

ସ୍ୱର୍ଗ ସମ୍ପତ୍ତିରୁ ଅଧିକ ପ୍ରୀତ
ସୁରସିକ-ଗଣେ ଧେନି ଅଛନ୍ତି
ସୁଖୀରେ ସେ ସାର
ସଙ୍ଗେ ମନୋହାରୀ ଥାଇ ଯାହାର ।" (ସୁ.ପ.)

ଏହିପରି ଭାବରେ ଦେଖିବାକୁ ଗଲେ, ଉପେନ୍ଦ୍ର ଭଞ୍ଜ ଯେ ଥିଲେ ଏକପତ୍ନୀ ବ୍ରତର ପ୍ରଧାନ ପୂଜାରୀ, ତାହା ସହଜରେ ଅନୁମିତ ହୁଏ । 'ସୂର୍ପଣଖା'ର ରାମଚନ୍ଦ୍ରଙ୍କଠାରେ ପ୍ରେମ ନିବେଦନରେ ରାମଚନ୍ଦ୍ରଙ୍କ ଉକ୍ତିରେ ଏହା ଉନ୍ମୋଚିତ ହୁଏ ।

"ବୋଇଲେ ରଘୁନନ୍ଦନରେ ରାମାବର
ବ୍ରତ ଆଚରଣ ଏକ ପତ୍ନୀ ମୋହର ।" (ବୈ.ବି.)

ଏଣୁ ଯୋଗରେ ଦାମ୍ପତ୍ୟ ପ୍ରେମକୁ ବାରଣ କଲାବେଳେ ଭୋଗରେ ଉପେନ୍ଦ୍ର ଭଞ୍ଜ ସେହି ପ୍ରୀତିକୁ ବାରମ୍ବାର ସ୍ମରଣ କରିଅଛନ୍ତି, ଏହା ସହଜରେ ଜଣାଯାଏ ନାହିଁ କି ? ଯୋଗୀ ଭୋଗୀର ଭୋଗ ନିଷେଧ କରିବା ସମୟରେ, ଭୋଗୀ ଗୃହୀ ଯୋଗୀର ଯୋଗ ନିଃଶେଷ କରିବାକୁ—ପ୍ରିୟାର ସାନ୍ନିଧ ଓ ଭୋଗର ସେହି ପରିମଳ ପରିବେଶ ସର୍ବଦା ଲାଭ କରିବାକୁ । ଉପେନ୍ଦ୍ର ଏଣୁ ଭୋଗୀଙ୍କୁ ଚେତାଇ କହିଅଛନ୍ତି—

"ଯୋଗୀଙ୍କ ଯୋଗ ହୁଅନ୍ତା ନାଶ
ସବୁବେଳେ ଥାଆନ୍ତା ମଧୁମାସ ।" (ର.ହା.)

ଯୋଗୀ ଗୃହେଁ ନାମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ, ଧାରଣା ଓ ସମାଧି ଆଦି ଅଷ୍ଟାଙ୍ଗ ଯୋଗ ଦ୍ୱାରା ବ୍ରହ୍ମ ସାଧନା । ଜୀବାତ୍ମାର ପରମାତ୍ମାଙ୍କ ସହିତ ଏକତ୍ର ବନ୍ଧନ ବା ଯୋଗସୂତ୍ରକରଣ । ମାତ୍ର ଭୋଗୀ କରେ ଏହାର ବିରୁଦ୍ଧାଚରଣ । କବି ଉପେନ୍ଦ୍ର ଭଞ୍ଜ ଗୃହିଁନାହାଁନ୍ତି ବ୍ରହ୍ମୋପଲବ୍ଧିକରଣ । ସେ ଗୃହିଁଛନ୍ତି ଯୋଗର ବିନାଶନ । ସୁର୍ପଣଖାର ରୂପ ବର୍ଣ୍ଣନା କରିବାକୁ ଯାଇ ଉପେନ୍ଦ୍ର ଗାଇଛନ୍ତି—

ବିହିଲା ସୁନ୍ଦର ରୂପ ଏମନ୍ତ ଭଲ
ବିନାଶିବ ଯୋଗୀ ଯୋଗ ଗୃହିଁଲେ ତାଳ । (ବୈ.ବି)

ନବଦୁର୍ବାଦଳ ଶ୍ୟାମ ରାମଙ୍କର କୋଟି କୋଟି ମନ୍ମଥର ମନ୍ମଥ ରୂପ ସନ୍ଦର୍ଶନରେ ବିହ୍ୱଳିତ ହୋଇ, ପ୍ରେମର ସାତ୍ତ୍ୱିକ ଭାବରେ ବିଚେଷ୍ଟା ଭାବ ପ୍ରଦର୍ଶନ କରି ଉଗ୍ରତପୀ ଋଷିମାନେ ଭାବେ ଅଛନ୍ତି—

"ବିଧାତା ଆମକୁ କରନ୍ତା ନାରୀ ।
ରେ ହୁଅନ୍ତେ ଏ କୋଦଣ୍ଡଧାରୀ
ବ୍ରହ୍ମ ପଦବୀ ପାଇ ହେବ ଜୟ ।
ବହିବା କି କର କାମିନୀ ବେଶ ।" (ବୈ. ବି.)

ଏଠାରେ ବ୍ରହ୍ମସାଧନ ଯୋଗୀକୁ ଭୋଗୀରେ ପରିଣତ କରିବା ପ୍ରୟାସ ନାହିଁ କି ? ଯୋଗ ସାଧନରେ ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର କାମନା ରହିଛି । ଏହି ପିଣ୍ଡ ମଧ୍ୟରେ ନିତ୍ୟ ଜୀବନର ତତ୍ତ୍ୱାନ୍ୱେଷୀ ହୁଏ ଯୋଗୀ, ସାଧକ ଯୁଗେ ଯୁଗେ ସମାଧି ସାଧନରେ । କିନ୍ତୁ ଭୋଗୀ ଉପେନ୍ଦ୍ର କହିଛନ୍ତି—

"ପ୍ରାଣବନ୍ଧୁ !
ନାରୀ ପୁରୁଷ ଦୁଇରେ
ଯେନି ଏକ ଜୀବନ କେବଳ ନୁହେ ଭିନ୍ନ
ଯୋଗେ ଏକତ୍ୱ ହୋଇରେ ।" (ଲା. ବ.)

ସ୍ତ୍ରୀ ପୁରୁଷର ଦାମ୍ପତ୍ୟ ପ୍ରଣୟରେ ପରିଣୟ ସୂତ୍ରରେ ଆବଦ୍ଧ ଯେ ସାମାଜିକ ଚଳନର ଅତି ପବିତ୍ର କଥା, ଏହା ଭୋଗୀ ପକ୍ଷରେ ସ୍ପୃହଣୀୟ । ସ୍ତ୍ରୀ ଯେ ପୁରୁଷର ଜୀବନ । ଜୀବନ ବିନା ପିଣ୍ଡର ବା ଶରୀରର ସ୍ଥିତି ନାହିଁ । ଶକ୍ତି ବିନା ପୁରୁଷ ଯେପରି ଯୋଗ ଶାସ୍ତ୍ରରେ ଜଡ଼, ଏହା କହିବାକୁ ଯାଇ ଉପେନ୍ଦ୍ର ଲେଖି ଅଛନ୍ତି—

ବୋଲଇ ଅବା ମୁଁ ପିଣ୍ଡ, ତୁ ମୋର ଜୀବନ
ପିଣ୍ଡକୁ ପରାଣ ଛାଡ଼ି ଯେନିବ ବମନ ।"

\+ + + (ଲା.ବ.)

ଯୋଗୀ "ବ୍ରହ୍ମାନନ୍ଦ ସୁଖ" ସ୍ୱର୍ଗୀୟ-ଶାନ୍ତ ଆସ୍ୱାଦନ ଜୀବାତ୍ମାଙ୍କୁ ପରମାତ୍ମା ସହିତ ମିଳନ କରି, ଭୋଗୀ ଗୃହେଁ ସ୍ତ୍ରୀ ପୁରୁଷର ଦୈହିକ ମିଳନରେ ହିଁ ପାର୍ଥିବ ସୁଖର ସମ୍ପତ୍ତି । ଏଣୁ ଉପେନ୍ଦ୍ରଙ୍କ ଭାଷାରେ —

କି ବଡ଼ ହେବ ନୃପତି
କି ହେବ ଇନ୍ଦ୍ର ସମ୍ପତି
ସବୁ ସୁଖ ଉତପତି ସ୍ଥଳ ଦମ୍ପତି ।"        (ପ୍ରେ: ସୁ:)

ପରମାତ୍ମାର ସାନ୍ନିଧ୍ୟ ପରିବର୍ତ୍ତେ, ବାନ୍ଧବୀର ସାଥୀ ଲୋଡ଼େ ଭୋଗୀ ଗାଇଅଛି—

"ବାନ୍ଧବୀ ପାଶରେ ଥାଉଁ ଥାଉଁ
ତା ମୁଖ ପଦ୍ମକୁ ଚାହୁଁ ଚାହୁଁ
ଯେଉଁ ପୁରୁଷ ପ୍ରାଣତ୍ୟାଗ କରିଛି
ତା ସମ ସୁକୃତୀ ନାହିଁ ଆଉ ।"

ଯୋଗୀ ଗୃହେଁ ଭଗବାନଙ୍କ ସାନ୍ନିଧ୍ୟ; ଭୋଗୀ ଗୃହେଁ ସ୍ତ୍ରୀର ସାନ୍ନିଧ୍ୟ । ଯୋଗ ମାର୍ଗରେ ଶରୀର ହେଲା ରଥ, ଆତ୍ମା ହେଲା ରଥୀ, ପ୍ରଜ୍ଞା ହେଲା ସାରଥି, ମନ ହେଲା ଲଗାମ । ଭୋଗ ମାର୍ଗରେ ସେହି ଶରୀର ହେଲା ରଥ, ମନ ହେଲା ରଥୀ । ଇଚ୍ଛା ହେଲା ସାରଥି, ଇନ୍ଦ୍ରିୟ ହେଲେ ଅଶ୍ୱ । କାମ କାମିନୀ, କାଞ୍ଚନ ଏ ହେଉଛି ଯୋଗ ମାର୍ଗର ପ୍ରତିବନ୍ଧକ । ମାତ୍ର ଭୋଗ ମାର୍ଗରେ ଏହା ବରଂ ହୋଇଛି ଦାମ୍ପତ୍ୟ ଜୀବନର ସଂଯୋଜକ । ଯୋଗୀ ପଳାୟନପନ୍ଥୀ, ସଂସାର ବିରାଗୀ, ଦୁଃଖବାଦୀ; କିନ୍ତୁ ଭୋଗୀ ସଂସାର ସରାଗୀ, ସୁଖବାଦୀ ଓ ଅନିତ୍ୟ

ସୁଖାନ୍ୱେଷୀ । ଏଣୁ ପ୍ରିୟାର ବାହୁ ବନ୍ଧନକୁ ଭୋଗୀ ନ ଏଡ଼ି ସେଇଁଠି କହି ଉଠେ—

"ବୃତ୍ତି ଥିବାଯାକେ
ତୃଷ୍ଣା ହୋଇଥିବ ତାହାକୁ ପାଇଲେ ।" (ଲ.ବ.)

ଯୋଗୀ ସେଇଠି ଗାଇଉଠେ—

ଯୁବତୀର ରକ୍ତାଧର ରମ୍ୟ ଜ୍ୟୋତି ନୟନର
ସ୍ୱର୍ଣ୍ଣ ଘନ ସମ ଦକ୍ଷ ଗୃହୁ ପଦ୍ମାନନ
ଇନ୍ଦ୍ରଧନୁ ଶୋଭା ସମ ପଳାନ୍ତ ବଦନ ।"
(ଜୀବନ ଚନ୍ଦ୍ର)

ଯୋଗୀ ଦୈହିକ ସୌନ୍ଦର୍ଯ୍ୟର କ୍ଷଣିକତା, ଅନିତ୍ୟତା ସନ୍ଦର୍ଶନ କଲାବେଳେ, ଭୋଗୀ ସେଥିର ନିତ୍ୟତାର ସନ୍ଧାନୀ ହୋଇ ଗାଇ ଉଠେ—

ରବ କର ନ ଛୁଡ଼ିଲା ପବଏ ମେରୁକୁ
ମୋ ମନ ନ ଛୁଟେ ତୋ ପୃଥୁଳ ଉରଜକୁ ।
(ପ୍ରେ.ସୁ.)

ତତ୍ତ୍ୱଦର୍ଶୀ ଯୋଗୀ ପ୍ରଜ୍ଞାବାନ୍ ହୋଇ ସର୍ବଭୂତରେ ନିଜକୁ ଏବଂ ନିଜ ମଧ୍ୟରେ ସର୍ବଭୂତର ସ୍ଥିତି ଅନୁଭବ କଲାପରି ପ୍ରେମରେ ତନ୍ମୟୀଭୂତ ପ୍ରେମିକ ଯେ ପ୍ରେମିକାକୁ ନିଜ ମଧ୍ୟରେ ଓ ଜଗତର ପ୍ରତ୍ୟେକ ବସ୍ତୁରେ ତାହାର ପ୍ରତିଫଳନ ଅନୁଭବ କରେ । ଉପେନ୍ଦ୍ର ଭଞ୍ଜ ଏହାର ଦୃଷ୍ଟାନ୍ତ ଦେଇ ଲେଖିଛନ୍ତି—

ଯେଣେ ଗୃହିଁଲେ ସେହି , ଦିଶଇ ନିଦ୍ରା ନାହିଁ
କେମନ୍ତେ ଦେଖିବି ସ୍ୱପନେ ।
ଯୋଗୀନ୍ଦ୍ର ଯୋଗଭଙ୍ଗୀ ଭୂରୁ ନୟନ ଭଙ୍ଗୀ
ସଙ୍ଗୀ ହୋଇଛୁ ଏକାମନେ ।

+ + + +

ଯୋଗ୍ୟ ନୋହିଲେ ମୁଁ ଯୋଗୀ ହୋଇଯିବି
ସେହି ସୁନ୍ଦରୀ କିମନ୍ତେ ସେ ।"

ଏହିପରି ଭାବରେ ଦେଖିବାକୁ ଗଲେ ଯୋଗୀ ଭଗବତ୍ ଧ୍ୟାନରେ ବ୍ୟସ୍ତ ଥିବା ସମୟରେ ଭୋଗୀ ପ୍ରେମିକାର ଧ୍ୟାନରେ ବ୍ୟସ୍ତ । ବ୍ରହ୍ମଜ୍ଞାନୀ ପରିବର୍ତ୍ତେ ପ୍ରେମ-ଜ୍ଞାନ ଭୋଗୀ ପକ୍ଷରେ ହୁଏ ସହଜ ସାଧ୍ୟ । ଉପେନ୍ଦ୍ର ଏଣୁ ପ୍ରେମିକାକୁ ପ୍ରେମିକର ଧ୍ୟାନ ବିଷୟରେ ବ୍ରହ୍ମଜ୍ଞାନକୁ ଯୋଗୀ ସଦୃଶ୍ୟ ଧ୍ୟାନ କରିବାକୁ ଭୁଲ ନଯାଇ ଗାଇଛନ୍ତି—

"ସେ ଧ୍ୟାନ ବିନୁ ନାହିଁ ଆନ,
ଋଷିରେ ଯଥା ବ୍ରହ୍ମଜ୍ଞାନ ।"

ପୁଣି—

ରସୁ ମୋ ଚିତ୍ତ ଭୋଗରେ ବ୍ରହ୍ମଜ୍ଞାନୀ
ମୁନିର ଯେମନ୍ତ ।

ପୁଣି ନାୟିକାକୁ ନ ପାଇଲେ ନାୟକ ଯେ ସଂସାର ବିରାଗୀ ଯୋଗୀ ହୋଇଯିବ ଏ ଆକୁଳତା ପ୍ରତ୍ୟେକ ସ୍ତରରେ ଉପେନ୍ଦ୍ର ପରିପ୍ରକାଶ କରିଅଛନ୍ତି ।

# ଭଞ୍ଜ ସାହିତ୍ୟରେ ସ୍ୱକୀୟା ପ୍ରୀତି

ସଂସ୍କୃତ ସାହିତ୍ୟ ବ୍ୟତୀତ ଉତ୍କଳସାହିତ୍ୟର ଖ୍ୟାତି ମୋଗଲ ରାଜତ୍ୱର ପ୍ରଧାନ ଘଟଣା । ପୂର୍ବବର୍ତ୍ତୀ ଗଜପତିଙ୍କ ରାଜତ୍ୱରେ ଶାରଳା ଦାସ ପ୍ରଭୃତି ମନୀଷୀମାନେ ଉତ୍କଳସାହିତ୍ୟର ଯେ ମାର୍ଗ ଦେଖାଇ ଥିଲେ ମୋଗଲରାଜତ୍ୱରେ ତାହା ବିସ୍ତୀର୍ଣ୍ଣ ହୋଇ ବହୁବିଧ ଉପାଦେୟ ଗ୍ରନ୍ଥ ଦ୍ୱାରା ପରିପୁଷ୍ଟ ହୋଇଥିଲା । ଏହି ଯୁଗରେ ଦୀନକୃଷ୍ଣ, ଉପେନ୍ଦ୍ର, କବିସୂର୍ଯ୍ୟ, ବିଶ୍ୱନାଥ ଖୁଣ୍ଟିଆ ପ୍ରଭୃତି ବହୁ କବି ଉତ୍କଳ ସାହିତ୍ୟରେ ନିଜ ନିଜର କୃତିତ୍ୱ ଦେଖାଇ ଯାଇଛନ୍ତି । ଉପେନ୍ଦ୍ର ଏହି କବିମାନଙ୍କ ମଧ୍ୟରେ ସର୍ବ ପ୍ରଧାନ । ଉପେନ୍ଦ୍ରଭଞ୍ଜ ପ୍ରାଚୀନ ଉତ୍କଳସାହିତ୍ୟରେ ସମ୍ରାଟ ରୂପେ ତିନି ଶତ ବର୍ଷ ଧରି ଉତ୍କଳ-ସାହିତ୍ୟ-ରାଜ୍ୟରେ ରାଜତ୍ୱ କରି ଆସୁଅଛନ୍ତି । ବର୍ତ୍ତମାନ ଯୁଗର ଆଦର୍ଶ ଅନୁସାରେ ସେ କାଳରେ କବି ଦୃଷ୍ଟି ସେପରି ପ୍ରଶସ୍ତ ନଥିଲା । ଯେଉଁମାନେ ଭଞ୍ଜଙ୍କ ପ୍ରେମକୁ ଆଧୁନିକ ଯୁଗର ଅନ୍ୟାନ୍ୟ କବିମାନଙ୍କ ପ୍ରେମ-ବିଭାବ ସହିତ ତୁଳନା କରି ଭଞ୍ଜଙ୍କୁ ନିମ୍ନସ୍ଥାନ ପ୍ରଦାନ କରିଥାନ୍ତି, ସେମାନଙ୍କୁ ବୁଝିବାକୁ ହେବ ଯେ ଭଞ୍ଜଙ୍କ ସମୟର ପରିବେଷ୍ଟନୀ ଯୁଗୀୟ ରୁଚି, ଦୃଷ୍ଟି କୋଣ ଓ ସ୍ୱକୀୟା ପ୍ରେମ ବର୍ଣ୍ଣନା କରିବାର ଲକ୍ଷ୍ୟ ଥିଲା କିଣ ? ମୋଗଲ ଦରବାରୀ ଭୋଗବିଳାସିତାକୁ ଭୁଲିଗଲେ, ଭଞ୍ଜୀୟ ମାନସକୁ ଭୁଲି ଯିବାକୁ ହେବ ବୋଲି ମୋର ମନେହୁଏ ।

ଉପେନ୍ଦ୍ରଭଞ୍ଜଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଭକ୍ତି ଯୁଗରେ ବିଶେଷ ଭାବରେ ଦୁଇଟି ମତବାଦର ପ୍ରଚାର ଓ ପ୍ରସାର ପ୍ରତିଷ୍ଠିତ

ହୋଇ ସାରିଥିଲା । ସେ ଦୁଇଟି ହେଲା ପଞ୍ଚସଖା ବା ଶାଖା ପ୍ରବର୍ତ୍ତିତ ବୈରାଗ୍ୟଭାବ ଓ ଚୈତନ୍ୟ ପ୍ରବର୍ତ୍ତିତ ପରକୀୟାଭାବ । "ଶ୍ରୀ ଚୈତନ୍ୟଙ୍କ ପ୍ରଭାବରେ ଓଡ଼ିଶାର ରାଜନୈତିକ ଜୀବନ ସମ୍ପୂର୍ଣ୍ଣ ଦୁର୍ବଳ ହୋଇ ପଡ଼ିଲା । ସେଥିପାଇଁ ଅତି ଅଳ୍ପ ସମୟ ମଧ୍ୟରେ ଓଡ଼ିଶାର ସ୍ୱାଧୀନତା ଲୋପ ପାଇବାକୁ ବସିଥିଲା ।" ଉପେନ୍ଦ୍ର ଯେତେବେଳେ ଦେଖିଲେ ଏହି ଦୁଇ ଭାବ ଦ୍ୱାରା ଲୋକେ ଅତିଶୟ ଧର୍ମ ପରାୟଣ ଓ ଶାନ୍ତିପ୍ରିୟ ହୋଇ ଦେଶର ବୀରତ୍ୱ ସାହସ ପୁନଃ ହରାଇ ପାରନ୍ତି, ସେତେବେଳେ ବୋଧହୁଏ ସେ ପଞ୍ଚସଖା ପ୍ରବର୍ତ୍ତିତ ଶୁଷ୍କ ବୈରାଗ୍ୟ ଭାବ—

> "ଏଣୁ ଏ ସଂସାର ସଙ୍ଗତେ
> ପୀରତି ନକରିବ ଚିତ୍ତେ ।"
> ଯେବେ କଲିବ ମୋହପାଶ
> କପୋତ ପ୍ରାୟେ ଯିବ ନାଶ ।

ଓ ଚୈତନ୍ୟ ପ୍ରବର୍ତ୍ତିତ ମତବାଦ "ପରକୀୟା ଭାବେ ଅତି ରସେର ଉଲ୍ଲାସ" ବିରୁଦ୍ଧରେ ଯାଇଛନ୍ତି । ଫଳରେ ସେ ଚୈତନ୍ୟ ପ୍ରଚଳିତ ପରକୀୟାପ୍ରେମଭାବକୁ ଓ ପଂଚସଖା ପ୍ରଚଳିତ ଯୋଗମାର୍ଗକୁ ଖଣ୍ଡି ଭୋଗମାର୍ଗରେ ପରିଣତ କରିବାକୁ ବାଧ୍ୟ ହୋଇଛନ୍ତି । ଏହି ଭୋଗ-ବାଦ ମୂଳରେ ଥିଲା ଭୋଗୀ ଉପେନ୍ଦ୍ରଙ୍କର ସଂସାର ପ୍ରତି ଗମ୍ଭୀର ମମତା, ସୃଷ୍ଟି ପ୍ରତି ପ୍ରବଳ ଅନୁକମ୍ପା, ଦୁଃସ୍ଥ ଓଡ଼ିଆ ସାମାଜିକ ଓ ପାରିବାରିକ ଜୀବନକୁ ସୁସ୍ଥ କରିବାର ପ୍ରବଳ ଆୟାସ ଓ ଦେଶର ସ୍ୱାଧୀନତା ପ୍ରତି ଆନ୍ତରିକ ପ୍ରୟାସ ।

ବର୍ତ୍ତମାନ ଦେଖାଯାଉ ଉପେନ୍ଦ୍ର ଏ ଦୁଇଟି ମତବାଦ ବିରୁଦ୍ଧରେ ସ୍ୱୀୟ ପ୍ରଣୀତ ପ୍ରଧାନ ପ୍ରଧାନ କାବ୍ୟ ମଧ୍ୟରେ କପଟ

ଷୀବ୍ର ଅଭିଯାନ ଚଳାଇଛନ୍ତି । ଭାଗବତର ଏକାଦଶସ୍କନ୍ଧର ଉଲ୍ଲିଖିତ ଖଣ୍ଡ ବୈରାଗ୍ୟଭାବ ବିରୁଦ୍ଧରେ ଯାଇ ସେ ଲେଖିଛନ୍ତି—

"ରତିରୁ ହତ । ପକ୍ଷୀ କପୋତ ।
ରହୁ ତାର ପରି ମୋର ଚରିତ ।" (ରସପଞ୍ଚକ)

ପୁନଶ୍ଚ—"ରସଲେଖା" କାବ୍ୟରେ—

"ପ୍ରୀତିରେ ପକ୍ଷୀ ମଲି ପ୍ରୀତିରେ ଦ୍ରବେ ଶିଳା
ମୁହିଁ ତୋ ପ୍ରୀତି ପରାଧୀନା
ପ୍ରୀତି ପରମ ଧନ ପାଇ ମୁଁ ହେଲି ଭିନ୍ନ
କି ଦୋଷେ ହେଲି ଏ ଯାତନା ହେ ।"

ଭାଗବତର ଅବଧୂତଙ୍କ ଗୁରୁକରଣରେ ସଂସାରାସକ୍ତ ବ୍ୟକ୍ତି-ମାନଙ୍କୁ ଭାଗବତକାର ଯେଉଁ ସତର୍କବାଣୀ ରୂପକ କଥା କରିଆରେ ଶୁଣାଇ ଦେଇଛନ୍ତି; ଉପେନ୍ଦ୍ର ତାହା ପ୍ରତ୍ୟକ୍ଷ ଭାବରେ ବିରୁଦ୍ଧ କରି ନାହାନ୍ତି କି ? ସଂସାର ସହିତ ପ୍ରୀତି କରିବାକୁ ଭାଗବତକାର ବାରଣ କରିଥିବା ସମୟରେ ଉପେନ୍ଦ୍ର କପୋତପକ୍ଷୀ ଆଖ୍ୟାନକୁ ଭିତ୍ତି କରି କହି ଉଠିଛନ୍ତି—"କପୋତପକ୍ଷୀ ପ୍ରୀତି କରି ମଲା ପରି ମୋର ଚରିତ ରହୁ ।"

ଉପେନ୍ଦ୍ର ଥିଲେ ବାସ୍ତବ ସଂସାରୀ । ସଂସାର ପ୍ରତି ପଳାୟନ-ପନ୍ଥୀର ମନୋଭାବ ତାଙ୍କର ନାହିଁ । ସଂସାରୀ ପକ୍ଷରେ ପ୍ରୀତି ଏକାନ୍ତ ବାଞ୍ଛନୀୟ । ଉପେନ୍ଦ୍ର ତାହା ନ ଭୁଲି କହିଛନ୍ତି—

ମୁଁ ସଂସାରୀ ପାଶୋରି ପାରିବକି କିଶୋରୀ
ଅଛି ମୋ କେଉଁ ଦମ୍ଭପଣ ହେ । (ରସଲେଖା)

ସଂସାରକ ପ୍ରୀତିର ବୈଶିଷ୍ଟ୍ୟ ପ୍ରତିପାଦନ କରିବାକୁ ଯାଇ ଉପେନ୍ଦ୍ର ବର୍ଣ୍ଣନା କରିଛନ୍ତି—

"ପରମ ଦ୍ରବ୍ୟ ପୀରତି, ପରମ ସୁଖ ସୁରତି,
ରତିରୁ ଜାତ ପୀରତି, ପ୍ରୀତିରୁ ରତି ।" (ପ୍ରେମ ସୁଧାନିଧି)

ରସିକ ହାରାବଳୀ କାବ୍ୟରେ ପ୍ରୀତିରୁ ଜାତ ସୁଖ ବିଷୟରେ କହିବାକୁ ଯାଇ ଲେଖିଛନ୍ତି—

"ମହାସୁଖ ନାହିଁ ଦମ୍ପତିରୁ, କି କାର୍ଯ୍ୟ କୁବେର ସମ୍ପତିରୁ
ଜୀବନ ଯିବାର ବଢ଼ିତ ନୁହଇ ଯୁବକ ଯୁବତୀ ବିଚ୍ଛେଦରୁ,
ପରମ ପଦାର୍ଥ ପୀରତିରୁ, ବଡ଼ ହୋଇ ସୁଖ ସୁରତିରୁ
ନାହିଁ ନଥିବ ନୋହିବ ସବ ମତେ ତହିଁକୁ ପ୍ରତିକାରଣ ଯିରୁ ।"

ପୁଣି—

"ପ୍ରୀତି ହୋଇ ଯେବେ ଏଡ଼େ ମଧୁର
କ୍ଷୁଧା ତୃଷ୍ଣା ନିଦ୍ରା ହେବ ବିଧୁର
ପୁଣି ଦଇବେ ହୋଇଲେ ଦମ୍ପତି
ପଦତଳେ ମିଳେ ଇନ୍ଦ୍ର ସମ୍ପତି
ପଶୁମାନେ ବଶ ହେଲେ ଏ ରସେ
ଯେହି ପାଷାଣ ସେ ଏଥି ନ ରସେ ।" (ରସିକ ହାରାବଳୀ)

ଏହିପରି "ପୀରତିରୁ କରତି ସଂସାରେ ନାହିଁ ଆଉ—" କହି ଉପେନ୍ଦ୍ର ପ୍ରତ୍ୟେକ ଭୋଗୀକୁ ଦାମ୍ପତ୍ୟ ପ୍ରଣୟରେ ଥିବା ନିଷ୍ଠା, ନିର୍ମଳତା ବିଷୟରେ କହି ନାହାନ୍ତି କି ?

ଯୋଗମାର୍ଗକୁ ଭୋଗମାର୍ଗରେ ପରିଣତ କରିବାକୁ ଯାଇ ଉପେନ୍ଦ୍ର "ବୈଦେହୀଶ ବିଳାସ" କାବ୍ୟରେ ଲେଖିଛନ୍ତି—

"ଯୋଗୀଙ୍କ ଯୋଗ ହୁଅନ୍ତା ନାଶ
ସବୁବେଳେ ଥାଆନ୍ତା ମଧୁମାସ ।"

ଉପେନ୍ଦ୍ରଙ୍କ ମତରେ ନାୟିକାର ଭାବ 'ବ୍ରହ୍ମପଦବୀ' ତୁଳନାରେ ଶ୍ରେଷ୍ଠ । ତାଙ୍କର ଭାଷାରେ "ବ୍ରହ୍ମପଦବୀ ପାଇଲେତ ନୋହିବ ଚିତ୍ତରୁ ପାଶୋରି ।" ଯୋଗୀ ହୋଇ ବ୍ରହ୍ମାନନ୍ଦ ଆସ୍ୱାଦନ କରିବା ଅପେକ୍ଷା ଭୋଗୀହୋଇ ପ୍ରୀତି ଆସ୍ୱାଦନ କରିବା ଉତ୍କୃଷ୍ଟ ବିବେଚନା କରି ଦଣ୍ଡକାରଣ୍ୟରେ ରାମଚନ୍ଦ୍ରଙ୍କର କୋଟି କନ୍ଦର୍ପ ସମିଶ୍ରିତ ଲାବଣ୍ୟମୂର୍ତ୍ତି ସନ୍ଦର୍ଶନରେ ଋଷିମାନଙ୍କ ମନୋଭାବ ପ୍ରକାଶ କରି ଉପେନ୍ଦ୍ର କହିଛନ୍ତି—

"ବିଧାତା ଆମ୍ଭଙ୍କୁ କରନ୍ତା ନାରୀ ।
ବର ହୁଅନ୍ତେ ଏ କୋଦଣ୍ଡଧାରୀ ॥
ବ୍ରହ୍ମପଦବୀ ପାଇ ହେବ କସ ।
ନୋହିବା କପରି କାମିନୀ ବେଶ ॥"

ପରେ ପରେ ଋଷିମାନେ ପ୍ରେମଭାବରେ ତନ୍ମୟ ହୋଇ ନିଜକୁ ସ୍ତ୍ରୀ ବେଶରେ ସଜ୍ଜିତ କରିଛନ୍ତି ରାମଚନ୍ଦ୍ରର ପ୍ରଣୟ ଲାଭ ଇଚ୍ଛାରେ । ଉପେନ୍ଦ୍ରଙ୍କ ଭାଷାରେ—

"ବିସ୍ମରୁ ପୁଲକିତ ଶରୀରେ
ବେପଥୁ ଜନ୍ମି ଆଙ୍ଗଜ ବୃକ୍ଷରେ
ବିଭ୍ରମ ଉପୁଜିଗଲା ମାନସ
ବୋଇଲେ ସଖାଙ୍କୁ ସଖି ଗୋ ଆସ
ବହିବା ତୁମ୍ଭିକି ଉରରେ ରଖି
ବକ୍ଷୋରୁହ ହେଲା ଭାବରେ ମୂର୍ଖୀ

ବେଣୀଏ ଭାବ ଜଟା ଲମ୍ବାଇ
ବିବିଧ କୁସୁମ ମଣ୍ଡିଲା ନେଇ
ବିହ୍ନଥିଲେ ଯେ ଆହୁତ ଅଗ୍ନିରେ
ବିସ୍ମରିଲେ ସ୍ୱାହା ଆଦ୍ୟ ଅକ୍ଷରେ

ରାମଚନ୍ଦ୍ର ଋଷିମାନଙ୍କର "ବିରେଷ୍ଟା ଭାବ ଦେଖି" କହିଛନ୍ତି "ତୁମ୍ଭେ ଏ ଯୁଗରେ ମୋର ସ୍ତ୍ରୀ ହୋଇ ପାରିବ ନାହିଁ । ଯେହେତୁ ଏ ଦେହେଁ ମୈଥିଳୀ ଏକା ବଲ୍ଲଭୀ" । ଏଥିରୁ ସ୍ତ୍ରୀଜାତିର ପ୍ରତିଷ୍ଠା ଓ ବ୍ରହ୍ମପଦବୀର ନ୍ୟୁନ୍ୟତା ପ୍ରତିପାଦିତ ସହଜେ ଅନୁମିତ ହୁଏ ।

'ରସ ଲେଖା' କାବ୍ୟରେ ଭଞ୍ଜ ନାୟିକାର ରୂପ ବର୍ଣ୍ଣନାରେ ଉଲ୍ଲେଖ କରିଛନ୍ତି—

"ଯୋଗୀନ୍ଦ୍ର ଯୋଗଭଙ୍ଗୀ
ଭ୍ରୁରୁ ନୟନ ଭଙ୍ଗୀ
ସଙ୍ଗୀ ହୋଇଛନ୍ତି ଏକା ମନେ

+ + + +

ସେ ଧ୍ୟାନ ବିନୁ ନାହିଁ ଆନ
ଋଷିରେ ଯଥା ବ୍ରହ୍ମଜ୍ଞାନ

କବି ଉପେନ୍ଦ୍ର ଏଠାରେ ଯୋଗୀର ଯୋଗ ମାର୍ଗରେ ବ୍ରହ୍ମ-ସାଧନା ପାଇଁ ଯେଉଁ ଏକାଗ୍ରତା ଆବଶ୍ୟକ ଏକନିଷ୍ଠ ଦାମ୍ପତ୍ୟ ପ୍ରଣୟରେ ସେହିପରି ଏକାଗ୍ରତା, ନିତାନ୍ତ ଦରକାର ବୋଲି ସୂଚାଇଛନ୍ତି ।

ନାୟିକା ଓ ନାୟକର ବିଚ୍ଛେଦରେ ପିଣ୍ଡ ଓ ଆତ୍ମାର ତତ୍ତ୍ୱ ପ୍ରତିଷ୍ଠା କରିବାକୁ ଯାଇ କହିଛନ୍ତି—

"ବୋଲନ୍ତି ଅବା ମୁଁ ପିଣ୍ଡ ତୁ ମୋର ଜୀବନ
ପିଣ୍ଡକୁ ପବନ ଗୁଡ଼ି ଦେନିବ ବିମନ ଯେ ।"

ବିଚ୍ଛେଦ ସମୟରେ ସେହିଁ ଉପେନ୍ଦ୍ର ନାୟିକା ଭାବପାରେ—

"ଶର ଉପରେ ଶର ବିନ୍ଧେ କାମ କି କରିବ
ଅନ୍ତର ହେଲଣି ପଡି ସିନା ମୋର ଜୀବ ।"
ଏ ପିଣ୍ଡ ତୋ ଏକା ଅଧିକାର
ଆହା କରିବାକୁ ସାହା ନାହିଁ ମୋର ।"

ପରକୀୟା ପ୍ରେମ ଦୃଷ୍ଟିରୁ ଯଦି କୁହାଯାଏ ମୋତେ ଜନ୍ମେ ଜନ୍ମେ ସେହି ଉକ୍ତି ମିଳୁ, ଉପେନ୍ଦ୍ର ମଧ୍ୟ ସ୍ୱୀକୀୟା ଦୃଷ୍ଟିରୁ କହିଛନ୍ତି—

"ଯେତେ ଜନ୍ମେ ଯେତେ ପୁଣ୍ୟ କରିଛୁ ମୁଁ ଠିକେ
ମିଳିଥିବଟି ସୁନ୍ଦରୀ ମେଳ ହେବା କାଳେ ଯେ ।"

ବର୍ତ୍ତମାନ ଦେଖାଯାଉ ପରକୀୟା ପ୍ରୀତିର ବର୍ଣ୍ଣନା ବିଷୟ । ପରକୀୟା ପ୍ରୀତି ଧର୍ମ ଦୃଷ୍ଟିରୁ ଚିନ୍ମୟ, ପରମ ପ୍ରେମରୂପା, କିନ୍ତୁ ସାଧାରଣ ଦୃଷ୍ଟିରୁ ଓ ସାମାଜିକତା ଦୃଷ୍ଟିରୁ ତାହା ଗ୍ରହଣୀୟ ନୁହେ, ବର୍ଜନୀୟ । ଏକ ପକ୍ଷରେ ଏହା ଯାବତୀୟ ସାମାଜିକ ଶୃଙ୍ଖଳା ଭଗ୍ନକାରୀ ଓ ଦାମ୍ପତ୍ୟ ଜୀବନର ଘୋର ଅନିଷ୍ଟକାରୀ । ସଂସାରୀ ପକ୍ଷରେ ସୁଷ୍ଠୁ ସାମାଜିକ ବିକାଶ, ଗାର୍ହସ୍ଥ୍ୟ ଜୀବନର ନିର୍ମଳ ପ୍ରକାଶ ନିମନ୍ତେ ସ୍ୱକୀୟା ପ୍ରୀତି ଏକାନ୍ତ ଆବଶ୍ୟକ । ଭକ୍ତି ଭାବର ପରକୀୟ

ସାଧାରଣ ସହକ ଭାବରେ ଯେପରି ଗ୍ରହଣ କଲେ ଓ ତାର ପ୍ରଭାବ ଯେତେବେଳେ ଓଡ଼ିଆ ସଭ୍ୟତା ଉପରେ ପଡ଼ିଲା ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ତାର ଚରମ ସାକ୍ଷୀ । ଉପେନ୍ଦ୍ର ବୋଧହୁଏ ଏହି ପ୍ରଭାବର ଗତିରୋଧ କରିବାକୁ ବସିଲେ । ତେଣୁଁଠାରେ ପରକୀୟା ନାମରେ ବର୍ଣ୍ଣନା କରାଯାଇପାରେ:—

ପାପ କରିଣ କଣାଣ କରୁଛି ।
ସାନ ଭଉଣୀ ମୋ ପାଖରେ ଅଛି ॥
ନୂଆ ବୟସ ହୋଇଛି ତାହାର ।
ଅନୁକ୍ଷଣେ ଚିନ୍ତା ପତି ସଙ୍ଗର ॥
ଦେଖି ଉଲ୍ଲସିଲା ଦେହ ।
ଅନଳ ଦେଖି ପତଙ୍ଗ ସେନେହ ॥
ନଅାଁକୁ ଦେଖି କଉ ତରଳିଲା ।
ସେହି ରୂପେ ମୋର ଭଗ୍ନୀ ହେଲା ॥
ଅନ୍ତର ହୋଇ ସେଠାରୁ ଗଲ ।
ଆର ଘରେ ଯାଇ ଚୂଲି ଜାଳିଲ ॥
ମୋର ଯିବାର ଜାଣିଣ ।
ସାନ ଭଉଣୀ ସଙ୍ଗେ ପ୍ରୀତି କରି ॥
ପ୍ରହର କାଳ ନେଇ ଗଲ ।
ମୁଁ ଯାଇ ମିଳିଲି ତାର ପାଶେଣ ॥
ଦେଖିଲି ଲୀବବନ୍ଧ ବଡ଼ ଗାଢ଼ ।
ଅଣଆୟତ ଭଗ୍ନୀ ମୋହର ॥
ଠାରି ଦେଲି ମୋତେ ପିଇବ ପାଣି ।
ବେଗେ ଜଳ ଦେଲି ଝଗ୍ରେ ଆଣି ॥

ସୁରତ ସରିଲା ପିଇଲା ଜଳ ।
ମୋତେ ଧରିଲେ ......... ॥
ନାନା ରସରେ ସେ କଲେ ରମଣ ।
ପହରକେ ଦେହ ହୋଇ କ୍ଷୀଣ ॥
ତେଜି କରି ଗଲେ ପରାଣ ଧନ ।
ଭୂଲି ନ ପାରିଲି ମୁଁ ଭୂରି ଦିନ ॥

ପୁଣି ପରକୀୟା ପ୍ରସଙ୍ଗରେ ଯେଉଁଠି ଉଲ୍ଲେଖ କରାଯାଏ—

"ନାରୀରେ ନାରୀ ପୁରୁଷେ ପୁରୁଷ
ରତି ହୀନ ପ୍ରୀତି ଦଶେ ବରଷ ।"

ସେଠି ଉପେନ୍ଦ୍ର ଭଞ୍ଜ ସ୍ୱକୀୟା ପ୍ରୀତିକୁ ଆହୁରି ସୁନ୍ଦର ଓ ସରସ କରି ବର୍ଣ୍ଣନା କରିବାରେ କ୍ଷତି ବା କଣ ହେଲା ? ଉଲ୍ଲିଖିତ ଅଂଶକୁ ରାଧାକୃଷ୍ଣ ତୁଳସୀ ପତ୍ର ପକାଇ ପାଠକମାନଙ୍କର ଯଦି ଆପତ୍ତି ଉଠେନି, ତା ସ୍ଥାନରେ ଲାବଣ୍ୟବତୀ ଓ ଚନ୍ଦ୍ରଭାନୁ ରଖିଲେ ଅଭିଯୋଗ ଆସିବ ବା କାହିଁକି ? ପରକୀୟା ପ୍ରୀତି ନାମରେ ରାଧା-କୃଷ୍ଣଙ୍କ ନିର୍ମାଲ୍ୟ ଦୋହାଇ ଦେଇ ଓଡ଼ିଆ ସାହିତ୍ୟରେ ଯାହା ବର୍ଣ୍ଣନା ହୋଇଛି ଭଞ୍ଜ ସ୍ୱକୀୟା ନାୟିକାର ବିପରୀତ, ପରିରମ୍ଭ, ନୀବିମୋକ୍ଷ, ଚନ୍ଦ୍ରଭୂଳନାର ବର୍ଣ୍ଣନାରେ ତ୍ରୁଟି ବା ରହିଲା କେଉଁଠି ? 'ବୈଦେହୀଶ ବିଳାସ' କାବ୍ୟରେ ପରକୀୟା ପ୍ରୀତି ବିରୁଦ୍ଧରେ ଅଭି-ଯୋଗ ବାଢ଼ି ତା ଉପରେ ସ୍ୱକୀୟାର ପ୍ରାଧାନ୍ୟ ବିସ୍ତାର କଲା ପରି ମନେ ହୁଏ । ସୂର୍ପଣଖାକୁ ପରକୀୟା ନାୟିକାରୂପେ ଚିତ୍ରଣ କରି ତାହାର ମାନସିକ ବିଶ୍ଳେଷଣ ଉପେନ୍ଦ୍ର ଦେଇଛନ୍ତି ଠିକ୍ ରାମଚନ୍ଦ୍ରଙ୍କ ନିକଟକୁ ଆସିବାର ଅବ୍ୟବହିତ ପୂର୍ବରୁ । କବିଙ୍କ ଭାଷାରେ:—

ଝଗଡ଼ଚଲ୍ ଭୃଙ୍ଗ ପୁଣି ମାଳତୀ ସ୍ନେହ
ବାସଙ୍କେ ସଙ୍ଗ ହୁଅଇ ସର୍ବାଙ୍ଗ ବନ୍ଧ ।

+ + + +

ବେଶ୍ୟା ସଙ୍ଗତ ହୋଇଲେ ରସିକ ପୁଂସ
ବଳାଇ କ ସ୍ୱକୀୟାରେ ସେ ଅଭିଳାଷ ।"

ଏହିପରି ଅଭିଳାଷ ପୋଷଣ କରି ସୂର୍ପଣଖା ନିଜର ନଗ୍ନ ସୌନ୍ଦର୍ଯ୍ୟ ପରିଦର୍ଶନ ଲାଗି ସ୍ୱକୀୟା ନାୟିକା ସୀତାଙ୍କ ପ୍ରତି ଥିବା ତାଙ୍କ ମନକୁ ଭଗ୍ନ କରିବାକୁ ବସିଥିଲେ ମଧ୍ୟ ବିଫଳ ମନୋରଥା ହୋଇ ପୁନଃ କହୁଛନ୍ତି:—

"ବିନୋଦ ଯେଉଁ ରାମାରେ କରିବ ମତି
ବିନୋଦୀ ଯେହୁ ଧରିବ ମୁଁ ସେହି ମୂର୍ତ୍ତି ।"

ଉପେନ୍ଦ୍ର ରାମଚନ୍ଦ୍ରଙ୍କ ପ୍ରତ୍ୟୁତ୍ତର ଏପରି ଦେଇଛନ୍ତି—

"ବୋଇଲେ ରଘୁନନ୍ଦନ ରାମାବର ।
ବ୍ରତ ଆଚରଣ ଏକ ପତ୍ନୀ ମୋହର ॥
ବଡ଼କୁଳେ ଜାତ ଭୂପ ଭଗିନୀ ତୁହି ।
ବୃଷସ୍ୟନ୍ତ ଆଚରଣ ଭଲ ତ ନୁହଇ ॥

ଏଠାରେ ପରକୀୟା ବିଟଭାବର ଲମ୍ପଟତା ଉପେନ୍ଦ୍ର ରାମଚନ୍ଦ୍ରଙ୍କ ମୁଖରେ ସମ୍ୟକ୍ ଭାବେ ସୂଚିତ ଦେଇ ଅନନ୍ତ ଓ ଏକପତ୍ନୀବ୍ରତତାର ନିଷ୍ଠା ପ୍ରତିଷ୍ଠା କରିବାକୁ ଯାଇ ତାଙ୍କର ମୁଖରେ ପରିସ୍ଫୁଟ କରିଛନ୍ତି—

"ବିଷ୍ଣୁ ଉଦ୍ଧି ଜଳ କେତେ ନିର୍ମଳ ଯୋଷା ।
ବାରିଦ ଆବିଳ ଜଳେ ଚାତକ ଆଶା ॥"

ପରକୀୟା ନାୟିକା ସୂର୍ପଣଖାକୁ ସୀତାଙ୍କର ଦାସୀର ସ୍ଥାନ ଦେଇ ସ୍ୱକୀୟାର ଜୟ ହାସଲ କରାଇଛନ୍ତି । ଏକପତ୍ନୀବ୍ରତତା, ସ୍ୱକୀୟା ପ୍ରତି ଗଭୀର ମମତା ଏଥିରେ ସ୍ପଷ୍ଟ ପ୍ରକାଶ ପାଉ ନାହିଁକି ?

'ଲାବଣ୍ୟବତୀର' "ମିଥିଳା ନବ ସଙ୍ଗମ କାଳେ ଯେ କଲ ନିୟମ ଏକପତି ଏକପତ୍ନୀ ବ୍ରତ"ରୁ ମଧ୍ୟ ସ୍ୱକୀୟାର ମହନୀୟତା ସହଜରେ ଅନୁମେୟ ।

ଉପେନ୍ଦ୍ର ଭଞ୍ଜ ଯେ ଥିଲେ ଏକପତ୍ନୀବ୍ରତତାର ପୃଷ୍ଠପୋଷକ, ଏକଥା କହିବା ବାହୁଲ୍ୟ ମାତ୍ର । ଏକ ପକ୍ଷରେ ଶୁଷ୍କ ବୈରାଗ୍ୟ ଓ ଅନ୍ୟ ପକ୍ଷରେ ସାଧାରଣ ଦୃଷ୍ଟିରୁ ପରକୀୟାର ସରାଗ ଥିବା ବ୍ୟକ୍ତି-ମାନଙ୍କ ବିରୁଦ୍ଧରେ ତୀବ୍ର ପ୍ରତିବାଦ କରି ଭଞ୍ଜ ପରକୀୟା ବିଷୟରେ କହିବାକୁ ଯାଇଛନ୍ତି—

"ସାମାନ୍ୟ ବନିତା କିନ୍ତୁ ନୁହଇ
ସୁପ୍ରୀତି ହୀନା, ଧନ ଅଧୀନା,
ସେଥିରୁ କି କାର୍ଯ୍ୟ ବିଗୁରୁ କିନା ।
ସାନ ବଡ଼ ନାହିଁ ମୂଳ କଉଡ଼ି ।
ସନ୍ନିଧେ ଯେହ୍ନି, ପ୍ରବେଶ ହୋଇ
ସେ ଘଡ଼ିକ ସେହି, ତାର ବୋଲାଇ ।
ସରିଲେ ଧନ ପକାଇ ମନ
ଶୁଣି ନାମ କରେ ଭର୍ତ୍ସନାମାନ ।"

ଏଠି ଏକନିଷ୍ଠ ଦାମ୍ପତ୍ୟ ପ୍ରେମର ସାଧନା ଆସିଲା ବା କେଉଁଠୁ । ନାୟକ ନାୟିକାର ଏକମନ, ଏକପ୍ରାଣ ଆଶା କରିବା ତ ବିଡ଼ମ୍ବନା ମାତ୍ର ।

ଭଞ୍ଜ ସ୍ୱକୀୟା ନାୟିକା ପ୍ରତି ଥିବା ଗଭୀର ଅନୁରକ୍ତିର ସମ୍ୟକ୍ ପ୍ରକାଶ କରି କହିଛନ୍ତି—

"ରୂପେ ତୋହର ନେତ୍ର ମୋହର
ରହେ ପଡ଼ି ଲୌହ ଚୁମ୍ବକ ପରି ।"

ବା "ରସୁମୋ ଚିତ୍ତ ତୋଠାରେ ବ୍ରହ୍ମଜ୍ଞାନେ ମୁନିର ଯେମନ୍ତ ଲକ୍ଷ୍ୟ ।" ହୋଇପାରେ ଏ ପ୍ରେମ ଦେହଜ, ରୂପଜ, ମୋହଜ । ତଥାପି ଏହା କାହିଁ ପରିରେ ପ୍ରେମ ପ୍ରବାହର ନିର୍ମଳ ଧାର ନୁହେଁ କି ? ଉପେନ୍ଦ୍ର ପରକୀୟା ପ୍ରୀତି ବା ପରସ୍ତ୍ରୀ ହରଣ କରିବା ପରିବର୍ତ୍ତେ ମରଣ ଶ୍ରେୟସ୍କର ବୋଲି ସ୍ୱୀକାର କରିଛନ୍ତି । ତାଙ୍କର ଭାଷାରେ—

"ପରଦ୍ରବ୍ୟ ପରସ୍ତ୍ରୀ ହରଣକୁ
ଲେଖୁଁ ଶୁଭ କରି ମରଣକୁ ।" (ଲାବଣ୍ୟବତୀ)

ଆଉ ଗୋଟିଏ କଥା ଲକ୍ଷ୍ୟ କରିବାର କଥା ପରକୀୟା ପ୍ରୀତିରେ ବିରହ ଜ୍ୱାଳା ସନ୍ତାପିତ କରିବା ନିମନ୍ତେ ଯେଉଁଠି ପଦ୍ମଦଳ, କୋମଳ ପଲ୍ଲବ ଶଯ୍ୟା, ଉଶୀର, କର୍ପୂର, ଚନ୍ଦନର ଆବଶ୍ୟକତା ପଡ଼େ, ଭଞ୍ଜ ସେଇଠି ଏକମାତ୍ର ଅବ୍ୟର୍ଥ ଔଷଧର ପ୍ରୟୋଗ କରିଛନ୍ତି ସୁଚିକିତ୍ସକ ପରାମର୍ଶଦାତା ରୂପେ । ତାଙ୍କ ମତରେ—

"ବିରହକୁ ଉପଚାର ମାତ୍ର ମନୋହାରୀ
ପଲ୍ଲବ ଶଯ୍ୟାଦି ଯେତେ ବିଅର୍ଥରେ କରି ଯେ ।"

ଏ ନିଷ୍ଠା ଓ ଭାବନା ପରକୀୟାରେ ଅସମ୍ଭବ । ସ୍ୱାମୀର ବିଚ୍ଛେଦରେ ସ୍ତ୍ରୀ ଯେ ବିକାରଗ୍ରସ୍ତା ମୃତ୍ୟୁକଳ୍ପ ।

ସ୍ୱକୀୟା ପ୍ରୀତିର ନିଷ୍ଠା ଓ ଆନ୍ତରିକତା ବିଷୟରେ ଉପେନ୍ଦ୍ର ପ୍ରକାଶ କରି କହିଛନ୍ତି—

“ମନ ଜାଣିବାକୁ ପ୍ରିୟାସମ ଜଣେ ଖୋଜିଲେ ମିଳିବ ନାହିଁ ।” ସ୍ୱକୀୟାରେ ଭଞ୍ଜଙ୍କ ଭାଷାରେ “ପ୍ରାଣରୁ ଅଧିକ ଯେଉଁ ଯେନା” ଥାଏ ପରକୀୟ ପ୍ରୀତିରେ ଏହା ଦୁଷ୍ପ୍ରାପ୍ୟ । ପ୍ରେମର ଗାଢ଼ତା ଓ ନାୟକ ନାୟିକାଙ୍କ ପରସ୍ପର ପ୍ରତି ଥିବା ମମତା ପ୍ରକାଶ କରି ‘ଲାବଣ୍ୟବତୀ’ କାବ୍ୟରେ କବି ବର୍ଣ୍ଣନା କରିଛନ୍ତି—

“ଦିବସ କାଳରେ ରତିସିନା ନାହିଁ କରିଛୁ ଦଇବ
ଭୁଜେ ଭୁଜେ ଛନ୍ଦା ଛନ୍ଦି ହୋଇ ହୃଦ ଉପରେ ଶୋଇବ
ବଢ଼ିଥିବା ଯାକ ତୃଷ୍ଣା ହୋଇଥିବ ତାହାକୁ ପାଇଲେ
ରତି କେବଳ ନିଷେଧ ନ କରିବ ଏମନ୍ତ ହୋଇଲେ
ରାତିତ ରାତି ଦିବସେ ଏହି ମତି କରିବ ମୋ ମନ
ଯେଉଣେ ଯାଉଥିବ ଗୁପ୍ତ ପ୍ରାୟେ ପଛେ କରିବ ଗମନ
ଗଣ୍ଠି ଦେଇଥିବ ବସନେ ବସନେ ରଜନୀ ଦିବସେ
ଏମନ୍ତ ଯତ୍ନ କରିଥିଲେ ଆଉକି ଅନ୍ତର ହେବ ସେ ।”

ପୁରୁଷ ନାରୀକୁ ଏ ଜୀବନରେ କେବଳ ନୁହେଁ ଜନ୍ମ ଜନ୍ମାନ୍ତରେ ମଧ୍ୟ ତାର ଦୋସର ହେବାକୁ ଆକାଂକ୍ଷା । ଏହି ମଧୁର ମିଳନର ନିଷ୍ଠା ଓ ପ୍ରତିଷ୍ଠା ପ୍ରତ୍ୟେକଙ୍କର ଅନୁକରଣୀୟ । ବିରହ ସମୟରେ ନାୟକ ଭାବୁଛି—

"ଆଜ ଭେଟିବ ନୋହୁଛୁ ପ୍ରଭତେ
ଭେଟ ହେବା ଉପାୟ ଅଛି ଏତେ ।
ହୁଣି ବିରହ ଅନଳେ ଦହନ
ହୋନ୍ତା ଏ ମୋହର ତନୁ ବହନ ।
ଭସ୍ମ ଉଡ଼ାଇ କୃପାରେ ପବନ
ନେଇ ପକାନ୍ତା କାନ୍ତା ସନ୍ନିଧାନ ।"

'ରସଲେଖା' କାବ୍ୟରେ ନାୟିକା ଚଉତିରେ ରାଜବଧି ଅନୁସାରେ ବହୁ ପତ୍ନୀ ଗ୍ରହଣ ପ୍ରଥାଥିବା ନାୟକ ବିରହରେ ଆଶା ଓ ଆଶଙ୍କାର ଜୁଆର ଖେଳାଇ ପଦ ଲେଖିଛନ୍ତି:—

"ନ ଜାଣଇ କି ମୁଁ ତୁମେ ନୃପତି କୁମର
ଅନେକ ଯୁବତୀ ଆଶା ଅଛି ତୁମ୍ଭଠାର
ଉମା ଶିବ ମନୋହାରୀ;
ଗଙ୍ଗାଙ୍କୁ ବହିଲେ ଶିରେ କ୍ଷୋଭ ସେ ନକରି ।

ନାୟକ ପ୍ରତି ନାୟିକାର ସନ୍ଦେହ ଖଣ୍ଡନ କରି ନାୟକ— ଚଉତିର ଉତ୍ତରରେ କହୁଛି—

"ତୋ ବିନା ନବୀନା ଆନ ଗତି ଯେବେ ଥିବ ତେବେ
ଗ୍ରୁମୁରେ ନୟନ କରାଇବୁ
ଯେବେ ମୋ ଦୋଷ ହୋଇବ ଯେ ତୋ ଚିତ୍ତକୁ ଆସିବ
ସେ ଦଣ୍ଡକୁ ସହିରେ ବହିବୁରେ, ପ୍ରାଣବନ୍ଧୁ

ପତି ଓ ପତ୍ନୀ, ଉଭୟେ ସ୍ୱକୀୟାରେ ଥାଏ ଏକମନ, ଏକ-ପ୍ରାଣ । ତାହାର ଉଲ୍ଲେଖ କରି କବି କହିଛନ୍ତି—

"ଏ ପିଣ୍ଡେ ତୋ ଏକା ଅଧିକାର
ଆହା କରିବାକୁ ଯାହା ନାହିଁ ମୋର ରେ ।"

ଏଥିରୁ ପତି ପତ୍ନୀ ଭିତରେ ଥିବା ଅନ୍ତର ସହିତ ଅନ୍ତର, ହୃଦୟ ସହିତ ହୃଦୟର ମିଳନର ପରିଚୟ ମିଳେନି କି ?

ଭଞ୍ଜ ଯାହା ବର୍ଣ୍ଣନା କରିଛନ୍ତି ତାହା ବାତ୍ସ୍ୟାୟନଙ୍କ କାମଶାସ୍ତ୍ରର ମାତ୍ର ନିୟମ ଲଙ୍ଘନ କରିନାହିଁ । ଭଞ୍ଜଙ୍କ ମତରେ—

"ବାତ୍ସ୍ୟାୟନ ଋଷିଙ୍କୁ ଯେ ଏ ରସ ଗୋଚର
ଗୀତେ କହେ ଉପେନ୍ଦ୍ର ଭଞ୍ଜ ବୀରବର ।"

ନାରୀ ହୃଦୟ ଚହ୍ଲିବାକୁ ହେଲେ ରସିକ ଦରକାର । ରସିକ ନାୟକ ନ ହେଲେ ନାରିକେଳ ସଦୃଶ ଉପେନ୍ଦ୍ର ନାୟିକାର ହୃଦୟକୁ ଚହ୍ଲିବ ବା କିପରି ? ଭଞ୍ଜଙ୍କ ଭାଷାରେ—

"ନାରୀର ହୃଦୟ ନାରିକେଳର ସଦୃଶ
ବାହାର ଅତି କଠିନ ଭିତର ସରସ ।"

ପୁନଶ୍ଚ—"ହୀର ନୀଳା ମାଣିକ୍ୟ ମୁକୁତା ବିଦ୍ରୁମର
ମୂଲ୍ୟ ଅଛି ମୂଲ୍ୟ ନାହିଁ ନାରୀରତନର ।"

ଏଇଠି ରହିଛି ନାରୀର ମର୍ଯ୍ୟାଦା; ସ୍ୱକୀୟା ନାୟିକାର ପ୍ରତିଷ୍ଠା । ସ୍ୱାମୀ ସ୍ତ୍ରୀର ଅଭେଦ ପ୍ରୀତି ବିଷୟରେ ବର୍ଣ୍ଣନା ଭଞ୍ଜ ଦେବାକୁ ଯାଇ ଲେଖିଛନ୍ତି—

ଦୂରେ ଥିଲେ ପାଶେ ଅଛୁ ଏହା ଥିବୁ ଯେମନ
କେତେ ଦୂରେ ଚନ୍ଦ୍ର, କେତେ ଦୂରେ କୁମୁଦିନୀ,
ପ୍ରୀତି ଅଭେଦ ତାଙ୍କର ।
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।"

ପୁଣି:—

"କ୍ଷୀର ନୀର ପରି ଅଭେଦ ପ୍ରୀରତି
ବେନି ତନୁ ଏକପ୍ରାଣ ।"
"ଯେମନ ଏକ ଜୀବନ କେବଳ ତନୁ ଭିନ୍ନ
ଯୋଗେ ଏକତ୍ର ହୋଇ ରେ ।"

ପରକୀୟାରେ ଯେଉଁ ଅଭେଦ ପ୍ରୀତିର ବର୍ଣ୍ଣନା ଅଛି ଉପେନ୍ଦ୍ର ସ୍ୱକୀୟାରେ ତାହା ମଧ୍ୟ ପ୍ରତିଷ୍ଠା କରିଛନ୍ତି । ପତ୍ନୀକିଷ୍ଟଙ୍କୁ ଶ୍ରେଷ୍ଠସ୍ଥାନ ଦେଇ କହିଛନ୍ତି:—

"ରଜାଙ୍କୁ ହେବାର ରାଜ୍ୟ ନଷ୍ଟ
ଯୁବାଙ୍କୁ ହେବାର ପତ୍ନୀ ଭ୍ରଷ୍ଟ
କହେ ଉପଇନ୍ଦ୍ର ଭଞ୍ଜ ବୀରବର
ଏଥୁଁ ବଳି ଆଉ ନାହିଁ କଷ୍ଟ" ।

ଏଥିରୁ ମନେହୁଏ ଉପେନ୍ଦ୍ର ଭଞ୍ଜ ସ୍ୱକୀୟା ନାୟିକାର ସୌନ୍ଦର୍ଯ୍ୟ ଏପରି ନଗ୍ନ ଭାବରେ ବର୍ଣ୍ଣନା କରିଛନ୍ତି ଯହିଁରେ ପରକୀୟା ନାୟିକାର ମନ ଆପେ ଆପେ ଭଗ୍ନ ହୋଇ ସ୍ୱକୀୟାଠାରେ ମଗ୍ନ ହୋଇଯିବ । ପରକୀୟା ପ୍ରୀତିରେ ଯଦି ନାୟକ ନାୟିକାର "କଣ୍ଠା କୋୟୂର" ହୋଇ ପାରିଲା ସ୍ୱକୀୟାରେ ନାୟକ "ପ୍ରିୟାର ମୁଁ କୋୟୂର" କହିଲେ କ୍ଷତି ବା କଣ ? ଆପତ୍ତି ବା କାହିଁକି ?

ଉପେନ୍ଦ୍ର ଭଞ୍ଜଙ୍କ ମାନସ ସମ୍ୟକ୍ ଭାବେ ଉପଲବ୍ଧି ନ କରି ଅଧିକାଂଶ ତାଙ୍କୁ ଅଶ୍ଳୀଳ କବି ବୋଲି ନାମିତ କରିଥାନ୍ତି । ସେମାନଙ୍କୁ ବୁଝିବାକୁ ହେବ ଯେ ସୃଷ୍ଟି ହେଉଛି ଅଶ୍ଳୀଳତାର ସମ୍ବନ୍ଧ । ଶିବ ମନ୍ଦିରର ଶିବ ଲିଙ୍ଗ କଣ ପ୍ରକୃତ କହେ ? ତାଙ୍କୁ ଯଦି ଅଶ୍ଳୀଳ କୁହା ନ ଯାଇ ଦେବତା ରୂପେ ପୂଜା କରାଯାଏ, ଭଞ୍ଜ ସ୍ୱକୀୟ ନାୟିକାର ରୂପ ଓ ଦାମ୍ପତ୍ୟ ପ୍ରଣୟ ସମୟର ବାସ୍ତବ ଅନୁଭୂତିକୁ ଭାଷାର ବାହନରେ ପ୍ରକାଶ କଲେ ଦୋଷ କଣ ହେଲା ? ଶିବଲିଙ୍ଗ, ରାମ ସୀତା କଥା ଏହା କଣ ଦାମ୍ପତ୍ୟ ପ୍ରଣୟର ଜ୍ୱଳନ୍ତ ପ୍ରତୀକ ନୁହେ କି ?

ମୋର ଯେତେ ଦୂର ମନେ ହୁଏ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ସ୍ୱକୀୟା ପ୍ରୀତିକୁ ଶ୍ରେଷ୍ଠତ୍ୱ ପ୍ରଦାନ କରିବା ଲକ୍ଷ୍ୟ ହେଉଛି ପରକୀୟା ପ୍ରୀତି ଓ ଯୋଗମାର୍ଗର ଗତିରୋଧ କରି ପ୍ରତାପରୁଦ୍ରଦେବଙ୍କ ସମୟରୁ ଦୁର୍ବଳ ହୋଇଥିବା ସାମାଜିକ, ରାଜନୈତିକ ଅବସ୍ଥାକୁ ପୁନଃ ଫେରାଇଆଣି ଏକନିଷ୍ଠ ଦାମ୍ପତ୍ୟ ପ୍ରେମର ପ୍ରତିଷ୍ଠାରେ ଓଡ଼ିଆର ସାମାଜିକ ଜୀବନକୁ ସୁଖ, ଶାନ୍ତି, ସ୍ନେହ ମମତାର ନିଳୟ କରିବା । ପ୍ରେମର ସ୍ୱରୂପ Scottଙ୍କ ଭାଷାରେ—

> "It is the secret sympathy,
> The silver link, the silken tie,
> Which heart, and mind to mind
> In body and in soul can bind."

ଭଞ୍ଜଙ୍କ ପ୍ରୀତି ବିଶ୍ୱ ପ୍ରେମ ଦୃଷ୍ଟିରୁ ନ୍ୟୂନ ହୋଇପାରେ । ଦାମ୍ପତ୍ୟ ପ୍ରେମ ଦୃଷ୍ଟିରୁ ସ୍କଟଙ୍କ ପ୍ରେମ ସ୍ୱରୂପରୁ କେଉଁ ଗୁଣରେ ଊଣା ?

—o—

# ପ୍ରଭାବିତ ଭଞ୍ଜ

*"କାବ୍ୟ ସାହିତ୍ୟ ସ୍ରଷ୍ଟା ଭାବରେ ଉପେନ୍ଦ୍ର ଭଞ୍ଜଙ୍କ ସ୍ଥାନ ଉତ୍କଳ ସାହିତ୍ୟରେ ଗୌରବୋଜ୍ଜ୍ୱଳ । ମାତ୍ର ଏହି କବିଶ୍ରେଷ୍ଠ ଉପେନ୍ଦ୍ର ଯେ ମୁହୂର୍ତ୍ତକର ସୃଷ୍ଟି ଏକଥା କୁହାଯାଇ ନପାରେ । କଥାରେ ଅଛି, 'ବିନାଶ୍ରୟଂ ନ ବର୍ତ୍ତନ୍ତେ କବିତା ବନିତା ଲତା ।' ସେହିଭଳି ଆଶ୍ରୟ ବିହୀନ ହୋଇ ଅନ୍ତରର ପ୍ରଭାବରେ ପ୍ରଭାବିତ ନହୋଇ ଉପେନ୍ଦ୍ରଙ୍କ ପକ୍ଷେ ଏ ବିରାଟ ସାହିତ୍ୟ-ସୌଧ ନିର୍ମାଣ କରିବା ସମ୍ଭବ ହୋଇ ନଥାନ୍ତା । ଉପେନ୍ଦ୍ର ଶୁଭ ମୁହୂର୍ତ୍ତରେ ଭୂମିଷ୍ଠ ହୋଇଥିଲେ । କାରଣ, ସେ ଯେଉଁ ଦିଗରେ ସାଧନା କରି କୃତକାର୍ଯ୍ୟ ହୋଇଥିଲେ, ତାହାର ଭିତ୍ତି ସ୍ଥାପନ ବହୁଦିନ ପୂର୍ବରୁ ହୋଇଥିଲା ।"

ଭଞ୍ଜ ତାଙ୍କ ପୂର୍ବବର୍ତ୍ତୀ ଓ ସମସାମୟିକ ସଂସ୍କୃତ ଓ ଓଡ଼ିଆ କବିମାନଙ୍କ ଦ୍ୱାରା ଯେ ପ୍ରଭାବିତ ଏହା ଅନସ୍ୱୀକାର୍ଯ୍ୟ । ଇଂରାଜୀ ସମାଲୋଚକ ହଡ଼ସନଙ୍କ ଭାଷାରେ:—"ଯତ୍ନ ସହକାରେ ପରୀକ୍ଷା କଲେ ଜଣାଯିବ ଯେ କବିର କାବ୍ୟ ମୂଳରେ ତାହାର ସ୍ୱଭାବକୁ ରୂପ ଓ ଗଠନ କରିବା ଦିଗରେ ସାହାଯ୍ୟ କରିଥିବା ଶିକ୍ଷାର ପ୍ରଭାବ, ନିଜକୁ ଉତ୍କୃଷ୍ଟ ରୂପେ ପରିପ୍ରକାଶ କରିବାର ଶିକ୍ଷାର ପ୍ରଭାବ, ତଦ୍ୱାରା ପଠିତ ପୁସ୍ତକର ପ୍ରଭାବ, ସମସାମୟିକ ବ୍ୟକ୍ତିମାନଙ୍କର ସଂପୃକ୍ତ ପ୍ରଭାବ ନିହିତ ଥାଏ ।"

ରୀତି-ଯୁଗର ଶ୍ରେଷ୍ଠ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଯେ କେତେଦୂର ଓଡ଼ିଆ କବି ଓ କାବ୍ୟମାନଙ୍କ ଦ୍ୱାରା ପ୍ରଭାବିତ, ତାହା

---

*ଉପେନ୍ଦ୍ର ସାହିତ୍ୟ ସମାଲୋଚନା—ବିଷ୍ଣୁମୋହନ ମହାନ୍ତି ।

ଦର୍ଶାଇବା ସଙ୍ଗେ ସଙ୍ଗେ ଭଂଜଙ୍କର ବିରାଟ ବ୍ୟକ୍ତିତ୍ୱ, ମୌଳିକତା, ନୂତନତ୍ୱ ଓ ପ୍ରତିଭାର ସୌରଭ କିପରି ବିସ୍ତାରିତ ତାହା ମଧ୍ୟ ଏ ପ୍ରବନ୍ଧର ଆଲୋଚ୍ୟ ବିଷୟ ।

ଉତ୍କଳର ଚତୁର୍ଦ୍ଦଶ ଶତାବ୍ଦୀଠାରୁ କାବ୍ୟ କବିତା ଲିଖିତ ହୋଇ ସବିଶେଷ ପ୍ରଚଳିତ ହେଉଥିଲା । ଅର୍ଜୁନ ଦାସଙ୍କ ରାମବିଭା, ନରସିଂହ ସେଣଙ୍କ ପରିମଳା, ଶିଶୁ ଶଙ୍କରଙ୍କ ଉଷାଭିଳାଷ, ଦେବ ଦୁର୍ଲ୍ଲଭଙ୍କ ରହସ୍ୟ ମଞ୍ଜରୀ, କାର୍ତ୍ତିକଙ୍କ ରୁକ୍ମିଣୀ ବିଭା, ବିଷ୍ଣୁଦାସଙ୍କ ପ୍ରେମଲୋଚନା, ରଘୁନାଥଙ୍କ ଲୀଳାବତୀ, ଧନଞ୍ଜୟଙ୍କ ରଘୁନାଥ ବିଳାସ ଓ ରତ୍ନ ମଞ୍ଜରୀ; ଦୀନକୃଷ୍ଣଙ୍କ ଜଗମୋହନ ଛାନ୍ଦ ଓ ରସକଲ୍ଲୋଳ ପ୍ରଭୃତି ଉଚ୍ଚ ଧରଣର କାବ୍ୟ, କବିତା ସାହିତ୍ୟ ରସିକଙ୍କ ଦ୍ୱାରା ପଠିତ, ଆଲୋଚିତ, ଆଦୃତ ଓ ପ୍ରଚଳିତ ହେଉଥିଲା ।” ଏ ସମସ୍ତ ଉପେନ୍ଦ୍ରଙ୍କ ଉପରେ ପ୍ରଭାବ ବିସ୍ତାର ନିଶ୍ଚୟ କରିଥିବ । ପ୍ରଥମେ କବି ସାରଳା ଦାସଙ୍କ କଥା ବିଚାର କରାଯାଉ । କବି ସାରଳା ଦାସଙ୍କ ପ୍ରଭାବ ଭଂଜଙ୍କର ପୌରାଣିକ କାବ୍ୟ 'ସୁଭଦ୍ରା ପରିଣୟ' ଉପରେ ସୁସ୍ପଷ୍ଟ । କଥାବସ୍ତୁରେ ନୂତନତ୍ୱ ନ ଥିଲେ ମଧ୍ୟ ବର୍ଣ୍ଣନା ପ୍ରସଙ୍ଗରେ ନାଟକୀୟତା ପରିଦୃଷ୍ଟ ହୁଏ । ଅର୍ଜୁନ ରହୁଥିବା ଗୃହରେ, ସତ୍ୟବତୀ ଓ ପରାଶର ପ୍ରଣୟ, ଅଞ୍ଜନାଙ୍କୁ ପବନ ଦେବତାଙ୍କର ରତିପ୍ରାର୍ଥନା, ବିଶ୍ୱାମିତ୍ରଙ୍କ ମେନକା ସହିତ ରତିଲୀଳା, ଅହଲ୍ୟାଙ୍କ ସହିତ ଇନ୍ଦ୍ରଙ୍କର ଗୋପନ ପ୍ରଣୟ ଇତ୍ୟାଦିରେ କବି ଉପେନ୍ଦ୍ରଙ୍କ ନାଟକୀୟତା ପରିଦୃଷ୍ଟ ହେଲେହେଁ ନାମକରଣ ଇତ୍ୟାଦିରେ ଭଂଜ ଯେ ସାରଳା ଦାସଙ୍କ ଦ୍ୱାରା ବିଶେଷ ଭାବେ ପ୍ରଭାବିତ, ତାହା ସହଜରେ ଅନୁମିତ ହୁଏ ।

"ଚନ୍ଦ୍ରଶାଳା ଭୁବନରେ ବଜେ ଚକ୍ରପାଣି,
ଅଭେଦ ଦେହ ପାର୍ଥଙ୍କୁ କୋଳ କରି ଆଣି ।
ଦ୍ୱାରେ ଉଭା ହୋଇଲେକ ସମସ୍ତ କାମିନୀ,
ହରି ଅର୍ଜ୍ଜୁନଙ୍କୁ କେହି ନ ପାରିଲେ ଚହ୍ନି ।
କେ ହରି କେହୁ ଅଟଇ ଖରବର ପାର୍ଥ,
କାହାର ଶିରରେ ଅର୍ଘ୍ୟ ଦେବା ଗୋ ସଙ୍ଗାତ" ।

(ସା: ମ. ବନପର୍ବ )

"ସନ୍ନିଧେ ଯାଇଁ ହେଲେ ଅର୍ଜ୍ଜୁନର,
ସେ ଶୋଭା ବର୍ଣ୍ଣି ହରି ଜାନୁପର ।
ସୁର ଶ୍ରୀକୃଷ୍ଣ ଦୁହେଁ ଏକାକୃତ,
ସେ ରୂପେ ପୁଣି ବିଜୟର ମୂର୍ତ୍ତି ସେ ।
ଶ୍ରୁତି ଅଗୋଚର କଥା ଯେ,
ସାଶଙ୍କିକ ହୋଇ ସକଳ କାମିନୀ
ଅର୍ଘ୍ୟ ନଦେଲେ ସର୍ବଥା ଯେ" ।

( ସୁଭଦ୍ରା ପରିଣୟ, ୭ମ ଛାନ୍ଦ )

'ରାମ ବିଭା' ଓ 'କଳ୍ପଲତାର' କବି "ଅର୍ଜ୍ଜୁନ ଦାସଙ୍କ କବିତ୍ୱ ଉପେନ୍ଦ୍ର ଭଂଜଙ୍କ ଦ୍ୱାରା ସମଧିକ ଆଦୃତ ହୋଇଥିଲା । ରାମବିଭା କାବ୍ୟ ଦ୍ୱାରା ଉପେନ୍ଦ୍ର ପ୍ରଭାବିତ ହେଲେ ମଧ ନିଜର ସ୍ୱାତନ୍ତ୍ର୍ୟ କପରି ବଜାୟ ରଖିଥିଲେ ତାହା ନିମ୍ନଲିଖିତ ଉଦାହରଣରୁ ସ୍ପଷ୍ଟ ହୁଏ ।

କୁରଙ୍ଗୀ ନୟନୀ ସୀତା ସ୍ୱୟେଂ କମଳନୀ
ଆନ କେ ଧରିପାରିବ ରଘୁନାଥ ପାଣି ।

ସୁବର୍ଣ୍ଣ ଥାଳୀରୁ ଦେଖା ନ କାଢନ୍ତି ହସ୍ତ,
କରର କଙ୍କଣ ମୁଖେଁ ଦେବେ ରଘୁନାଥ ।

\+ \+ \+ \+

ଗୁରୁଜନ ବର୍ଜିଲେ ସୀତା ଲାଜ କଲା,
ଆତୁର ଥିବାରୁ ସୀତା ଅନ୍ନ ନ ଭୁଞ୍ଜିଲା ।

( ରାମ ବିଭା ପ୍ରାଚୀ ଛାନ୍ଦ ୧୧ )

ବହୁଁ ପଞ୍ଚଗ୍ରାସୀ ହସ୍ତ ସ୍ଥାଳୀରୁ ନ ଗୃହେ,
ବଦନେ ରାମ ମୁରତି ଦେଖନ୍ତେ ମୈଥିଳୀ ଯେ ।
ବାଳ ବଧୂ ବନ୍ଦେ ଯଥା ଚକୋର ସୁ ସ୍ନେହୀ,
ବସି ପବାଛନ୍ନ ବୃକ୍ଷେ ଟେକି ନ ଅନାଇ ଯେ ।

( ବୈଦେହୀଶ ବିଳାସ ଛାନ୍ଦ ୧୪ )

ଉପର୍ଯ୍ୟୁକ୍ତ ରାମ ବିଭାର ଘଟଣା ସହିତ ଭଂଜଙ୍କର ବୈଦେହୀଶ ବିଳାସର ସାମ୍ୟ ଥିଲେ ମଧ୍ୟ ଉପମା ଅଳଙ୍କାରର ପ୍ରୟୋଗରେ ଭଞ୍ଜ ନିଜର ସ୍ୱକୀୟତା ରକ୍ଷା କରି ପାରିଛନ୍ତି । ଭଞ୍ଜ ଏହି କବିଙ୍କ କାଳ୍ପନିକ କାବ୍ୟ 'କଳ୍ପଲତା' ଦ୍ୱାରା ମଧ୍ୟ ପ୍ରଭାବିତ । 'କଳ୍ପଲତା'ର ଜଗନ୍ନାଥ ବନ୍ଦନାର ପ୍ରଭାବ ଭଞ୍ଜଙ୍କର ସୁଭଦ୍ରା ପରିଣୟର ଜଗନ୍ନାଥ ସ୍ତୁତି ଉପରେ ପଡିଛି । ଅର୍ଜୁନ ଦାସଙ୍କ ଭାଷାରେ:—

ପୁରୁଷୋତ୍ତମ କ୍ଷେତ୍ର ସିନ୍ଧୁ କୂଳେ,
ନୀଳଗିରି ଶିଖର ବଟମୂଳେ ।

( କଳ୍ପଲତା—ଷଷ୍ଠ ଛାନ୍ଦ )

---

ଲାବଣ୍ୟବତୀ (ପ୍ରାଚୀ) ପ୍ରଥମ ଭାଗ ମୁଖବନ୍ଧ-ପୃ ୧୧୪

ମିଳ୍‌ ତଟେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରାଜ
ସାଧୁଜନେ ଅଚ୍ଛ ତହିଁ ବିହୃତ ଆଶ୍ଚର୍ଯ୍ୟ ହେ ।”

ଏଠାରେ ଶବ୍ଦ ସାମ୍ୟ ଲକ୍ଷ୍ୟ କରିବାର କଥା । ପ୍ରଥମ ଛନ୍ଦୋବଦ୍ଧ କାବ୍ୟ ରାମବିଭା ଓଡ଼ିଆରେ ସମ୍ଭବତଃ ସର୍ବପ୍ରଥମ ବର୍ଧିବଦ୍ଧ କାଳ୍ପନିକ ବା ଆଖ୍ୟାୟିକା କାବ୍ୟ । କଳ୍ପଲତା ଦ୍ୱାରା ଯେ ଭଞ୍ଜ ପ୍ରଭାବିତ ଏହା ଅସ୍ୱୀକାର କରିହେବ ନାହିଁ । ଷୋଡ଼ଶ ଶତାବ୍ଦୀର ଅନ୍ୟ ଜଣେ କବି ବନମାଳୀ ଦାସଙ୍କ ଗୃହ ଇଚ୍ଛାବତୀ ଦ୍ୱାରା ମଧ୍ୟ ଭଞ୍ଜ ପ୍ରଭାବିତ ହୋଇପାରି ବୋଧହୁଏ । ✲ ଗୃହ ଇଚ୍ଛାବତୀର “ପୀରତି କାରଣ ଏକା ଯୁଗେ ଯୁଗେ ଥାଉ ।” ଭଞ୍ଜଙ୍କର ‘ରସଲେଖା’ କାବ୍ୟର “ପୀରତିରୁ କାରଣ ସଂସାରେ ନାହିଁ ଆଉ”ରୁ ଏହା ବୁଝାଯାଏ । ଏହାପରେ ନରସିଂହ ସେଣଙ୍କ ‘ପରିମଳା’ କାବ୍ୟର ପ୍ରଭାବ ଭଞ୍ଜଙ୍କର ‘ରସିକ ହାରାବଳୀ’ କାବ୍ୟରେ ସ୍ୱୀକାର୍ଯ୍ୟ ।

“ପ୍ରିୟାର ବିଚ୍ଛେଦ ମରଣହୁଁ ବଡ଼ ଦୁଃଖ
ଖାଇଥିବା ସମ ହୋଇନାହିଁ ଆଉ ଲୋକ ।”
(ପରିମଳା—୧୬ଶ ଛାନ୍ଦ)

“ଜୀବନ ଯିବାର ବଡ଼ତ ନୁହଁଇ ଯୁବାଙ୍କୁ
ଯୁବତୀ ବିଚ୍ଛେଦରୁ ।”
(ରସିକ ହାରାବଳୀ—୮ମ ଛାନ୍ଦ)

ରୂପ ଓ ଋତୁ ବର୍ଣ୍ଣନାର ପ୍ରଭାବ ମଧ୍ୟ ଭଞ୍ଜଙ୍କ କାବ୍ୟ ଉପରେ ପଡ଼ିଥାଇ ପାରେ । ବିଷ୍ଣୁ ଦାସଙ୍କ ପ୍ରଭାବ ମୁଦ୍ରାଂକିତ

---

✲ ନୀଳମଣି ମିଶ୍ର, ଗୃହ ଇଚ୍ଛାବତୀ, ଇଚ୍ଛାବତୀ ଓ ଇଚ୍ଛାବତୀ ଝଂକାର ୧୯ଶ ବର୍ଷ ବିଷୁବ ସଂଖ୍ୟା ।

ହୋଇଛନ୍ତି ଲାବଣ୍ୟବତୀ କାବ୍ୟରେ, ପୁଷ୍କରଣୀ-ସ୍ନାତା ନାୟିକାର ରୂପ ବର୍ଣ୍ଣନା କରି ବିଷ୍ଣୁଦାସ ଲେଖିଛନ୍ତି—

ଚିକୁରେ ବିନ୍ଦୁ ବିନ୍ଦୁ ହୋଇ ଜଳମାନ
କିବା ନୀଳ ଚାମରେ ଗୁନ୍ଥିଲି ମୋତି ଘନ ।

(ପ୍ରେମଲୋଚନା)

ବିନ୍ଦୁ ବିନ୍ଦୁ ଜଳ ରହିଛି ଚିକୁରୁ କୁଟିଳ ବାଳେ,
+ + + +
ମୋତି ପତନ କି ହୋଇଛି ନୀଳମଣି ଧରଣୀ ।

(ଲାବଣ୍ୟବତୀ ୬ଷ୍ଠ ଛାନ୍ଦ)

ଭଞ୍ଜଙ୍କର 'ପ୍ରେମସୁଧାନିଧି' କାବ୍ୟର ନାୟିକାର ବକ୍ଷ ବର୍ଣ୍ଣନାରେ ମଧ୍ୟ ବିଷ୍ଣୁଦାସ ପ୍ରଭାବ ସୁସ୍ପଷ୍ଟ । ତାଙ୍କ ଭାଷାରେ—

"ଗିରିରେ ବ୍ରତତୀ ଜାତ ବୋଲନ୍ତି ସମସ୍ତେ
ବ୍ରତତୀରେ ଗିରିଜାତ କଲି ମୁଁ ସାକ୍ଷାତେ ।"

(ପ୍ରେମଲୋଚନା—୪ର୍ଥ ଛାନ୍ଦ)

ସର୍ବମତରେ ସମ୍ମତ ଏମନ୍ତ ପର୍ବତ ଜାତ ପରେ ଲତା,
ଲତାରୁ ଏବେ ପର୍ବତ ଜାତ ହେଲି ଚାହିଁ କର୍ମିବେ ଉର୍ଦ୍ଧେରେତା ।
ତାହା ଶୋଭିତା । ଦେଖି କେ ନୋହିବ ଲୋଭିତା ।
କଣ୍ଠ ପରେ ହରି ହରି ପରେ କଣ୍ଠ ଚଢ଼ାଇଲି ଏବେ ବନିତା ।

(ପ୍ରେମସୁଧାନିଧି—୪ର୍ଥ ଛାନ୍ଦ)

ଭଞ୍ଜ ବିଷ୍ଣୁଦାସଙ୍କ ଦ୍ୱାରା ପ୍ରଭାବିତ ସତ୍ୟ, ତଥାପି ନିଜର ମୌଳିକ ଚିନ୍ତାଧାରାର ସୂଚନା ଦେଇଛନ୍ତି—"କଣ୍ଠ ପରେ ହରି

ହରି ପରେ କଥା ଚଢ଼ାଇବାରେ" । ଏହି ନୂତନତ୍ୱ ହିଁ ଭଞ୍ଜଙ୍କୁ ସ୍ୱତନ୍ତ୍ର ମୌଳିକତ୍ୱ ପ୍ରଦାନ କରେ ନାହିଁ କି ?

ଭଞ୍ଜଙ୍କ କାବ୍ୟ ସମୂହରେ ସ୍ୱକୀୟା ନାୟିକାର ବର୍ଣ୍ଣନା ଲାଭ କଲେ ହେଁ ପରକୀୟା ନାୟିକାର ରୂପ ବର୍ଣ୍ଣନାର ପ୍ରଭାବ ଭଞ୍ଜଙ୍କ କାବ୍ୟ ନାୟିକାମାନଙ୍କ ଉପରେ ପତିତ ହୋଇଛି । ଦେବଦୁର୍ଲ୍ଲଭ ଦାସଙ୍କ "ରହସ୍ୟ-ମଞ୍ଜରୀ" ରେ ଋତୁ ବର୍ଣ୍ଣନାର ପ୍ରଭାବ ଭଞ୍ଜଙ୍କ କାବ୍ୟ ସମୂହରେ ପଡ଼ିଛି । କବି ହରିହର ନରେନ୍ଦ୍ରଙ୍କ 'ମଦାଳସା' କାବ୍ୟର ପ୍ରଭାବରୁ ଭଞ୍ଜ ମଧ୍ୟ ବାଦ ଯାଇ ନାହାନ୍ତି । ମଦାଳସାର କବି ବର୍ଣ୍ଣନା କରିବାକୁ ଯାଇ ଲେଖି ଅଛନ୍ତି:—

"ମଧୁଲୋଭେ ମଧୁକର କମଳେ ଥିଲା
ମୁଦିତ ହୋଇଲେ ତହିଁ ବନ୍ଦୀ ହୋଇଲା ।"

ଭଞ୍ଜ ଲାବଣ୍ୟବତୀ କାବ୍ୟରେ ଲେଖିଛନ୍ତି:—

"ଦାରୁ ଭେଦକ ଭ୍ରମର ପଦ୍ମଫୁଲେ ଶୋଇ,
ବେଳୁ ବେଳ ରସ ଭୋଗ ଉପଯୋଗ ପାଇ ।

( ଲାବଣ୍ୟବତୀ—୩୭ ଛାନ୍ଦ )

ଏ ସ୍ଥଳରେ ଭାଷାର ଛଟା ଲକ୍ଷ୍ୟ କରିବାର କଥା । 'ଉଷାଭିଳାଷ'ର କବି ଶିଶୁଶଙ୍କର ଦାସଙ୍କ କାବ୍ୟରୁ ଭାଷା ଓ ଭାବ ଦ୍ୱାରା ଭଞ୍ଜଙ୍କ 'ଲାବଣ୍ୟବତୀ' ମଧ୍ୟ କେତେକ ସ୍ଥଳରେ ସ୍ପଷ୍ଟ ପ୍ରଭାବିତ । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଭାଷାରେ:—

"ଏ ପର୍ଯ୍ୟନ୍ତ ଓଡ଼ିଆ-ସାହିତ୍ୟ ରାଜ୍ୟର କାବ୍ୟ-ସିଂହାସନରେ ଉପେନ୍ଦ୍ର ଭଞ୍ଜ ଅଦ୍ୱିତୀୟ ପ୍ରତିଷ୍ଠା ଲାଭ କରି ଆସୁଛନ୍ତି । କାରଣ

ତାଙ୍କର ପୂର୍ବବର୍ତ୍ତୀ କବିମାନଙ୍କର କାବ୍ୟାଦି ଅଦ୍ୟାବଧି ପ୍ରକାଶିତ ହୋଇନାହିଁ । × × × ଶିଶୁଶଙ୍କରଙ୍କର ଊଷାଭିଳାଷ ସେହି ପ୍ରତିଦ୍ୱନ୍ଦିତାର ପ୍ରଥମ ଶକୁନ ସ୍ୱରୂପ ଭଞ୍ଜଙ୍କର ଅସପତ୍ନତା ମୂଳରେ ସାମାନ୍ୟ ଏକ ଆଘାତ ମାତ୍ର ପ୍ରଦାନ କରିବ ।" ଯେଉଁ ଗୀତ ବା ଭଙ୍ଗୀର ଆଶ୍ରୟରେ ଊଷାର ବିରହ ବେଦନା ପ୍ରକଟିତ ହୋଇଛି, × × × ତାହାର ଛାୟା ପରବର୍ତ୍ତୀ ଯୁଗର କବିମାନଙ୍କ କୃତୀରେ ଏପରିକି ଭଂଜକବିଙ୍କ ଗ୍ରନ୍ଥମାନଙ୍କରେ ମଧ୍ୟ ପ୍ରଭାବ ବିସ୍ତାର କରିଥିବାର ଦେଖାଯାଏ ।

ଯଥା:—

"ପଲଙ୍କ ତେଜିଣ ଉଠିଲି ସୁମୁଖୀ ସ୍ୱପନ ସଙ୍କେତ ପାଇଣ
ଆହା ପ୍ରାଣନାଥ ! କେଣେ ଗଲୁ ବୋଲି,
ଉଚ୍ଚ ସ୍ୱରେ କରେ କାରୁଣ୍ୟ ।
ଦଇବ ! ଦେଖାଇ ନିଧି ହରି ନେଲୁ
ଶିଶୁ କୁମାରୀ ମୁଁ କିଛି ନଜାଣଇ,
କମ୍ପାଇ ମୋତେ ଏହା କଲୁ ।"
( ଉଷାଭିଳାଷ—୫ମ ଛାନ୍ଦ )

ଏହି ବର୍ଣ୍ଣନା ଭଙ୍ଗୀର ଏକ ଅନାବିଲ ସ୍ୱଚ୍ଛ ପ୍ରତିବିମ୍ବ ଭଞ୍ଜକବିଂକ 'ଲାବଣ୍ୟବତୀ' କାବ୍ୟର ଦ୍ୱାଦଶ ଛାନ୍ଦରେ ଦେଖାଯାଏ ।

"ଚେତି ଚତୁରୀ ଚାହିଁଲା ନିଶି ନାଶେ,
ପାଶେ ନାହିଁ ଦିବ୍ୟ ତରୁଣ
ମାରି ହୃଦେ ହାତ ନାଥ ନାଥ ବୋଲି
ଅତି ଉଚ୍ଚେ କଲା କାରୁଣ୍ୟ ।

ଟଙ୍କାଟେକ ଅଧିରେ । ଚେତନା ହତ ସେ ବଧିରେ,
ଶେଯ ଲେଉଟାଇ କବରୀ ଫିଟାଇ
କର ଉର କୁଚ ସନ୍ଧରେ" ।

ଉପରୁ ଉଦ୍ଧୃତାଂଶ ତୁଳନା କଲେ କେବଳ ଯେ ବର୍ଣ୍ଣନା ଭଙ୍ଗୀର ସାମ୍ୟ ଲକ୍ଷିତ ହୁଏ, ତାହା ନୁହେ, ପରନ୍ତୁ ଅନେକ ସ୍ଥଳରେ ଶବ୍ଦସାମ୍ୟ ମଧ୍ୟ ପାଠକର ଆଖିରେ ପଡ଼େ । ତଥାପି ବର୍ଣ୍ଣନା ଭଙ୍ଗୀରେ ଭଂଜଙ୍କର ସ୍ୱତନ୍ତ୍ର୍ୟ ବଜାୟ ରହେ । କାର୍ତ୍ତିକ ଦାସଙ୍କ 'ରୁକ୍ମିଣୀ ବିଭା' କାବ୍ୟର ପରକୀୟା ନାୟିକାର ରୂପ ବର୍ଣ୍ଣନା ପ୍ରଭାବ ଭଞ୍ଜୀୟ କାବ୍ୟ ସମ୍ଭାରରେ ପରିଲକ୍ଷିତ ହୁଏ । ରୁକ୍ମିଣୀର କେଶ ବର୍ଣ୍ଣନା କରିବାକୁ ଯାଇ କାର୍ତ୍ତିକ ଦାସଙ୍କ "କୁଟିଳ କୁନ୍ତଳ ନୀଳ କବରୀ ଭାର," ପରି ଭଂଜ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ କେଶ ବର୍ଣ୍ଣନା କରି ଲେଖିଛନ୍ତି:—"ନୀଳ ଚିକ୍କଣ କୁଟିଳ କୋମଳ ।" ଏଥିରୁ କେବଳ ଭାବସାମ୍ୟ ପରିଲକ୍ଷିତ ହୁଏ ନାହିଁ, ଶବ୍ଦ ସାମ୍ୟ ମଧ୍ୟ । ପ୍ରତାପ ରାୟଙ୍କ 'ଶଶିସେଣା'ର ନିମ୍ନଲିଖିତ ପଂକ୍ତିର ପ୍ରଭାବ ବୈଦେହୀଶ ବିଳାସରେ ସୁସ୍ପଷ୍ଟ ।

"ଶରଦ ଚନ୍ଦ୍ରମା ଆନନ, ବେନି ଚକୋର କି ସେ
ଫୁଲ୍ଲାରବିନ୍ଦ ସୁଗନ୍ଧେ କି ଅଳି ଲଳିସେ ବସେ ?"
( ଶଶିସେଣା )

"ବାସ ଚହଟି ଅଙ୍ଗୁ ଯାଉଥିଲା
ବେଢ଼ିଥିଲେ ରଥେ ଭ୍ରମର ମାଳା ।"

( ବୈଦେହୀଶ ବିଳାସ-୩୧ ଛାନ୍ଦ )

'ସୁଗନ୍ଧ'ର ସୂଚନା ଉଭୟେ ରଖିଲେ ହେଁ ଭଂଜଙ୍କର ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ ଭିନ୍ନ ଭଙ୍ଗୀରେ ।

ପୁରୁଷୋତ୍ତମ ଦାସଙ୍କ "କାଞ୍ଚି-କାବେରୀ" କାବ୍ୟର ପ୍ରଭାବ ଭଂଜଙ୍କର ଅନେକ କାବ୍ୟର ନାୟିକାମାନଙ୍କର ରୂପ ବର୍ଣ୍ଣନା ସହିତ ସାମ୍ୟ ଅଛି ।

ଯଥା:— ସିନ୍ଦୁର ବିନ୍ଦୁ ଲଲାଟେ ନୟନେ କଜ୍ଜ୍ୱଳ
ସୁଦ୍ରବ୍ୟ କରିଣ ଖୋଷା ଖୋଷିଛି ସୁନ୍ଦରୀ

× × ×

ଜାନୁ ଜିଣଇ ରମ୍ଭା କି କନକର କାନ୍ତି ।

× × ×

ସଞ୍ଚ ଘଞ୍ଚ ତହିଁ ଅଟେ ତାର କୁଚ ଯୋର ।

( କାଞ୍ଚି କାବେରୀ )

ଝଟି ଫୁଲ ପରି ଖୋଷା ଖୋଷିଛି ଯୋଷା ୟେ ।

× × ×

ଉଚ୍ଚ ଘଞ୍ଚ କୁଚ ବେନି × ×

(ଲାବଣ୍ୟବତୀ-୧୩ ଛାନ୍ଦ)

ଏଠାରେ ଶବ୍ଦ ସାମ୍ୟ ଲକ୍ଷ୍ୟ କରିବାର କଥା ।

ଏ ସମସ୍ତ କବିମାନଙ୍କ ବ୍ୟତୀତ ଭଂଜ ଦାଣ୍ଡୀରାମାୟଣକାର ବଳରାମ ଦାସଙ୍କ ରାମାୟଣ ଦ୍ୱାରା 'ବୈଦେହୀଶ ବିଳାସ' କାବ୍ୟରେ ଅନେକାଂଶରେ ମଧ୍ୟ ପ୍ରଭାବିତ । ବଳରାମ ଦାସଙ୍କ ଜଗମୋହନ

ରାମାୟଣ ଉପେନ୍ଦ୍ର ଭଂଜଙ୍କ ସମୟରେ ସର୍ବଜନାଦୃତ ହୋଇ ଉତ୍କଳର ଗୃହେ ଗୃହେ ପଠିତ ଓ ପୂଜିତ ହେଉଥିଲା । × ×
ବଳରାମ ଦାସଙ୍କର କବିତ୍ୱରେ ଉପେନ୍ଦ୍ର ମୁଗ୍ଧ ହୋଇଥିଲେ । ବୈଦେହୀଶ ବିଳାସର ପ୍ରଥମ ଛାନ୍ଦର ଚତୁର୍ଥ ପଦରେ ଉପେନ୍ଦ୍ର ତାଙ୍କୁ କାଳିଦାସ ଓ ଭୋଜଙ୍କ ସହିତ ସମାନ ଆସନ ପ୍ରଦାନ କରିଅଛନ୍ତି । ବୈଦେହୀଶ ବିଳାସର କଥାବସ୍ତୁ ଉପେନ୍ଦ୍ର ଦାଣ୍ଡି ରାମାୟଣରୁ ଗ୍ରହଣ କରିଅଛନ୍ତି । ଲାବଣ୍ୟବତୀର ୧୬ ଛାନ୍ଦରେ ଚନ୍ଦ୍ରଭାଳିକ ଦ୍ୱାରା ଯେ ରାମଚରିତ ବର୍ଣ୍ଣିତ, ତାହା ଜଗମୋହନ ରାମାୟଣର ଅନୁରୂପ ।" ଦାଣ୍ଡି ରାମାୟଣ ଓ ବୈଦେହୀଶ ବିଳାସରୁ ଗୋଟିଏ ଗୋଟିଏ ଉଦାହରଣ ଦେଲେ ଭଂଜ କିପରି ଭାଷା, ଭାବ ଓ ବିଷୟ ବସ୍ତୁରେ ମଧ୍ୟ ବଳରାମ ଦାସଙ୍କ ଦ୍ୱାରା ପ୍ରଭାବିତ ଜଣାଯିବ ।

"ଆଦିତ୍ୟ ଦେବତା ଯେବେ ପଶ୍ଚିମେ ଉଇଁବ ।
ପର୍ବତ ଶିଖରେ ଯେବେ ପଦ୍ମ ଗୋ ଫୁଟିବ ॥
ନଦୀ ଯେବେ ସମତୁଲେ ସର୍ବଦା ବହିବ ।
ମେରୁ ପର୍ବତ ଟଳି ଯେବେ ଗୋ ପଡ଼ିବ ॥
ତଥାପି ମୋହର ଜାଣ ନ ଟଳଇ ମନ ।
ମୋତେ ଯତି ପଣେ ଏକା ଶ୍ରୀରାମ ଭଜନ ॥"

( ଦାଣ୍ଡି ରାମାୟଣ—ସୁନ୍ଦର କାଣ୍ଡ )

"ବୋଧି ନିକଟା ତାହାଙ୍କୁ ରଖି ।
ବୋଲେ ସୀତା ସୀତାଂଶୁ ସୁମୁଖୀ,
ବରୁଣ ଦିଗେ କି ତରୁଣ ଅରୁଣ ଉଦେ ହୋଇଛି ।
କେ ଅଛ ଦେଖି ଗୋ । ବାମାଏ ।

ବକଶିଛୁ କ ଶିଖଶ୍ୱ ଶିଖେ ।
ବନା ଜଳରେ ପଦ୍ମ ତା ସୁଖେ ।
× × × ବଳ ପଡ଼ ବା ଏମାନ ହେବ ।
ବଇଦେହୀ ଚଉ ନ ଠେଳବ ।"

( ବୈଦେହୀଶ ବଳାସ ୧୬ ଛାନ୍ଦ )

ଏଠାରେ ପର୍ବତ ଉପରେ 'ପଦ୍ମ' ଫୁଟିବା ପ୍ରସଙ୍ଗ ଉଦ୍ଧେସ୍ତୁ ରଖିଲେ ହେଁ ଜଳ ବନା ଯେ ପଦ୍ମର ସ୍ଥିତି ଅସମ୍ଭବ—ଏହା କହବା ଦ୍ୱାରା ଭଂଜଙ୍କର ମୌଳକ ଚନ୍ତାଧାରର ପ୍ରକାଶ ଅଧିକ ହୁଏ । ପଦ୍ମିନୀ ଜାତୀୟା ସୀତାଙ୍କ ସହତ ଲ୍ବଣ୍ୟବତୀର କପର ରୂପ ବର୍ଣ୍ଣନାରେ ସାମଞ୍ଜସ୍ୟ ଅଛି, ତାହା ନମ୍ନଲଖିତ ଉଦାହରଣରୁ ସ୍ପଷ୍ଟ ।

"ଶ୍ରୀମୁଖ ଯେ ଶ୍ୱେତପଦ୍ମ ପ୍ରାୟ ବକାଶଇ + + +
ନୟନ ଯୁଗଳ କବା ନୀଳ ଉତ୍ପଳ
ପଦ୍ମପତ୍ର ନାଭି ବହୁ କ ପଦ୍ମ ମୃଣାଳ
ରକ୍ତବର୍ଣ୍ଣ ପଦ୍ମପତ୍ର ପ୍ରାୟ ପାଦ ଦୁଇ ।
ଏମନ୍ତ ଜାତର ସୀତା ଅଟନ୍ତି ଥାଇ ।

( ଦା: ର: ଆ: କା: )

"ପ୍ରିୟା ମୋ ପଦ୍ମିନୀ ପଦ୍ମ ପାଦ ପାଣି ସୁବାସ ଚେତସନ
ପଦ୍ମପତ୍ର ଆଖି ପଦ୍ମ ମୁଖୀ   ପଦ୍ମ ପତର ଉଦର ।"

( ଲ୍ବଣ୍ୟବତୀ ୩୬ ଛାନ୍ଦ )

ଧନଞ୍ଜୟ ଭଞ୍ଜଙ୍କର ରତ୍ନମଞ୍ଜରୀ, ରଘୁନାଥ ବିଳାସ ଓ ଅନଙ୍ଗ ରେଖା ପ୍ରଭୃତି କାବ୍ୟର ପ୍ରଭାବ ନାଞ୍ଜଙ୍କ ଉପରେ ପଡ଼ି-ଥିବାର ସହଜରେ ଅନୁମିତ ହୁଏ । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଭାଷାରେ—

"ଲାବଣ୍ୟବତୀର ଶୋଭା ବର୍ଣ୍ଣନା, ଉପବନ ବିହାର ଓ ସରସୀ କ୍ରୀଡ଼ାର ବର୍ଣ୍ଣନା ସହିତ ରତ୍ନମଞ୍ଜରୀର ସ୍ନାନ ସରସୀର ବର୍ଣ୍ଣନାରେ ବିଶେଷ ସାମ୍ୟ ଅଛି ।"

ସଂସାର ଲାବଣ୍ୟ ସର ରଚିଲି ଗୁଣି
ଶିରୀଷ ପୁଷ୍ପର ସବୁ କୋମଳ ଆଣି ।
ଚନ୍ଦ୍ର ତହୁଁ ଆହ୍ଲାଦ ଦେଲି
ଜମ୍ବୁନଦ ସୁବର୍ଣ୍ଣର ଜ୍ୟୋତି ହରିଲି ।

ଏମନ୍ତ ସବୁ ରତନୁ ଆଣିଲି ସାର
ଏତେ କରି ନିର୍ମାଣିଲି ସୁନ୍ଦରୀବର ।"

(ରତ୍ନ ମଞ୍ଜରୀ)

କୁରଙ୍ଗରୁ ତରଙ୍ଗ ବିଦ୍ୟୁତ୍ ରଙ୍ଗ ହରି
ଲାବଣ୍ୟ ଶିରୀଷରୁ କୋମଳ ବଳେ ଜୁରି କରି ଯେ,
ସୁବର୍ଣ୍ଣରୁ ବର୍ଣ୍ଣ ରାଜହଂସଠାରୁ ଗତି,

\+ \+ \+ \+

ସବୁଠାରୁ ସାର ସାର ଭାଗ ଆଗ ଆଣି
ପୁରଟ ପ୍ରତିମା ପରି ରଚିଲି ରମଣୀ ଯେ ।"

(ଲାବଣ୍ୟବତୀ—ଦ୍ୱିତୀୟ ଛାନ୍ଦ)

ରତ୍ନ ମଞ୍ଜରୀ କାବ୍ୟ ବ୍ୟତୀତ ରଘୁନାଥ ବିଳାସ ଓ ଅନଙ୍ଗରେଖା ପ୍ରଭୃତି କାର୍ବ୍ୟ ଦ୍ୱାରା ମଧ୍ୟ ଭଞ୍ଜ ସମ୍ୟକ୍ ଭାବେ ପ୍ରଭାବିତ ।

ଶୁଣି ଶ୍ରୀରାମ ଉତ୍ତର ବୋଇଲା ତହୁଁ ଧୀବର
ରହ ତୁମେ ରଘୁବୀର ଧୋଇବି ତୋର ପୟର
ଏ ନାବ ମୋର ଜୀବିକା ଏ ପୁଣି ହେବ ନାୟିକା
ମୁଁ ପୁଣି କରିବି କସ ମୋ କୁଟୁମ୍ବ ଯିବେ ନାଶ ।
(ରଘୁନାଥ ବିଳାସ)

ବଧିର ନୁହଁଇ ବୀର ବୋଇଲା ତହୁଁ ଧୀବର
ଶୁଣିଲିଣି ପଥରେ ପଥରେ ଅବଳା
ବାଲିପଡ଼ ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା ।
(ବୈଦେହୀଶ ବିଳାସ)

"ଅନଙ୍ଗ ରେଖା" କାବ୍ୟରେ ନାୟିକାର କେଶ ବର୍ଣ୍ଣନା କରି ଧନଞ୍ଜୟ ଲେଖିଛନ୍ତି—

ନୀଳକୁଟିଳ ମୃଦୁଳ ଚିକ୍କଣ ଚିକୁର
(ଅନଙ୍ଗରେଖା)

ଉପେନ୍ଦ୍ର ତାଙ୍କର ପ୍ରଭାବରେ ପ୍ରଭାବିତ ହୋଇ ଲେଖିଛନ୍ତି—
"ନୀଳ ଚିକ୍କଣ କୁଟିଳ କୋମଳ । + +
ଏମନ୍ତ କେଶ କି ଭୂମି ସମ୍ଭବ ।"
(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ-ସପ୍ତମ ଛାନ୍ଦ)

T. S. Eliot ଙ୍କ ଭାଷାରେ:—"No author can claim himself to be absolutely original."

✳ "ପ୍ରକୃତ କଥା ହେଉଛି ଯେ ମହାକବି, ସେ ମହା ପ୍ରତିଭାଶାଳୀ । ତାଙ୍କର ପକ୍ଷରେ ହିଁ ଅନ୍ୟଠାରୁ ମହାନ୍ ଭାବର ସାର ସଂଗ୍ରହ ସମ୍ଭବପର । ସେ ସ୍ୱଭାବ ସିଦ୍ଧ ମହାକବି । ସୁତରାଂ, ପିତାମହଙ୍କଠାରୁ ଅଂଶ ବିଶେଷ ଗ୍ରହଣ କରିଥିବାର ପ୍ରମାଣ ବା ଯୁକ୍ତିଯୁକ୍ତ ଅନୁମାନ ତାଙ୍କର ଯେଉଁ କବିତାଂଶମାନଙ୍କରେ ଉପଲବ୍ଧ, ଯେଗୁଡ଼ିକୁ ଅବତାରଣା କଲାବେଳେ ଦେଖିବାକୁ ମିଳେ ଯେ, ଉପେନ୍ଦ୍ର ଧନଞ୍ଜୟଙ୍କଠାରୁ ଋଣ ଗ୍ରହଣ କରି ମଧ୍ୟ ଅଦ୍ଭୁତ ପାଣ୍ଡିତ୍ୟ ଓ ପ୍ରତିଭା ବଳରେ ଚକ୍ରବୃଦ୍ଧି ସୁଧ ସହିତ ତାହା × ପରିଶୋଧ କରି ପାରିଛନ୍ତି × × × ।"

ରଘୁନାଥ ହରିଚନ୍ଦନଙ୍କ ଲୀଳାବତୀ କାବ୍ୟର ଦ୍ୱିତୀୟ ଛାନ୍ଦର,

"ଯେଉଁଠାରେ ଯେତେ ସୁନ୍ଦର
ସବୁ ଆଣିଲ ଲୋଡ଼ି ।
ଯେତେଠାରେ ଯେତେ ଲାବଣ୍ୟ,
ଆଣି ଥୋଇଲୁ ସଜାଡ଼ି ।

ର ପ୍ରଭାବ ଲାବଣ୍ୟବତୀର, "ସବୁଠାରୁ ସାର ସାର ଭାଗ ଆଣି" ଉପରେ ପଡ଼ିଥିବାର ଅନୁମାନ କରାଯାଇ ପାରେ । ଏହା ବ୍ୟତୀତ ଦୀନକୃଷ୍ଣ ଦାସଙ୍କ ଜଗମୋହନ ଛାନ୍ଦର ଋତୁ ବର୍ଣ୍ଣନାର ପ୍ରଭାବ

✳ ଅନଙ୍ଗ ରେଖା ମୁଖବନ୍ଧ—ଓଡ଼ିଆ ସାହିତ୍ୟ ଏକାଡେମୀ । ଓଡ଼ିଆ ସାହିତ୍ୟର ଇତିହାସ—ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ୨ୟ ଭାଗ ।

ଭଞ୍ଜଙ୍କ ଉପରେ ସୁସ୍ପଷ୍ଟ । ରସକଲ୍ଲୋଳର ପ୍ରକୃତ ବର୍ଣ୍ଣନା ଓ ନାରୀ ସୌନ୍ଦର୍ଯ୍ୟ ଚିତ୍ରଣରେ ସାମଞ୍ଜସ୍ୟ ଭଞ୍ଜଙ୍କର ଅଧିକାଂଶ କାବ୍ୟର ପ୍ରକୃତ ବର୍ଣ୍ଣନା ଓ ନାରୀ ରୂପ ବର୍ଣ୍ଣନା ସହିତ ଅଛି । ଅନ୍ୟ ଜଣେ କବି ଲୋକନାଥ ବିଦ୍ୟାଧର, ଯେ କି ଭଞ୍ଜଙ୍କର ସମସାମୟିକ, ତାଙ୍କ ଲେଖାରେ ଭଞ୍ଜଙ୍କ ସହିତ ଅନେକ ସାଦୃଶ୍ୟ ଦେଖାଯାଏ । ଏ ଉଭୟେ କବି ପରସ୍ପର ଦ୍ୱାରା ପ୍ରଭାବିତ କି ନା କହିବା କଷ୍ଟସାଧ୍ୟ । ହୁଏତ "Great poets think alike" ଦୃଷ୍ଟିରୁ ଚିନ୍ତାଧାରରେ ସାମ୍ୟ ରହିପାରି ଥାଏ, ତଥାପି ଶବ୍ଦ ସାମ୍ୟ ସହିତ ଘଟଣା ଓ ଭାବ ସାମ୍ୟ ଲକ୍ଷ୍ୟ କରିବାର କଥା । ସର୍ବାଙ୍ଗ ସୁନ୍ଦରୀ କାବ୍ୟରେ ଲୋକନାଥ ବିଦ୍ୟାଧର ବର୍ଣ୍ଣନା କରିଛନ୍ତି:—

"ତହୁଁ କିଛି ଦିନାନ୍ତରେ ପୁଷ୍ପଧନୁ ରମା,
ଗର୍ଭବତୀ ହୋଇଲା ସକଳ ସୁଖଧାମା ।
ସାତ କୁମ୍ଭ ସମାନ ସୁନ୍ଦରୀ ଅଙ୍ଗଦେଶ
ଦୋହଳ ପାରଦ ଲାଗି ରଜତ ସଦୃଶ

ଦିନୁ ଦିନ ବୃଦ୍ଧି ହେଲା ଅଳସ ଉଦର ।
ପୀନ ହେଲା କ୍ଷୀଣ ମଧ୍ୟ ଗୁରୁ କଳେବର ॥
ସ୍ତନରୁ ତା କଠିନତା କେତେ ତୁଟିଗଲା ।
ଅଗ୍ରଭାଗେ ରୁଚିର ଶ୍ୟାମତା ପ୍ରକାଶିଲା ॥

( ସର୍ବାଙ୍ଗ ସୁନ୍ଦରୀ-୨ୟ ଛାନ୍ଦ )

ଭଂଜଙ୍କର ଲାବଣ୍ୟବତୀ କାବ୍ୟର ଠିକ୍ ଏହି ଘଟଣା ଉପରେ ଭାବ ପ୍ରକାଶ ଲାଭ କରିଛି ଦେଖିବାର କଥା

"ଶୁଭ୍ର ବେଳେ ଗର୍ବଦର୍ପହାରୀ ଶୁଭ୍ରକେଶୀ,
କେତେ ଦିନେ ଶୋଭା ତାର ଆନ ଆନ ଦିଶି
କାନ୍ତ ସୁବର୍ଣ୍ଣ ଦୋହନ ପାରଦ ମିଶିଲ
ରଜତ ପିତୁଳା ତୁଳା ଅବଳା ଦିଶିଲ

କ୍ଷୀଣ ଯାଇ ପୀନ ହେଲ
ଖସି ନିତମ୍ବ, ବିମ୍ବକୁ ଆଶ୍ରା କଲ
+ + + +
ଶ୍ୟାମଳ କୋମଳ ଅଙ୍ଗୀ ସ୍ଥାନ ଅଗ୍ର ବନ୍ଧ ।"
( ଲାବଣ୍ୟବତୀ — ୨ୟ ଛାନ୍ଦ )

ଏ ସମସ୍ତ ଦୃଷ୍ଟିରୁ ବିଚାର କଲେ, "ତାଙ୍କର ଋଣଗ୍ରସ୍ତଭାବ ସତ୍ତ୍ୱେ ବି ତାଙ୍କୁ ଋଣୀ ରୂପେ ଗ୍ରହଣ କରାଯାଇ ନ ପାରେ । କାରଣ କାବ୍ୟ ଜଗତରେ ଏପରି ଭାବ ଗ୍ରହଣ ଓ ବିନିମୟ ସ୍ୱାଭାବିକ ଏବଂ ପୃଥିବୀର ପ୍ରତ୍ୟେକ କବି, ନାଟ୍ୟକାର ଅପରର ବର୍ଣ୍ଣନା ବୈଭବ, ଭାବଭଙ୍ଗୀ ଅନୁକରଣ କରନ୍ତି ଓ କରିଛନ୍ତି ।" ମାତ୍ର ଉପେନ୍ଦ୍ର ଯେଉଁଠାରେ ଯାହା ଗ୍ରହଣ କରିଛନ୍ତି, ସେଥିରେ ତାଙ୍କର ମୌଳିକତ୍ୱ, ବ୍ୟକ୍ତିତ୍ୱ ଓ ପ୍ରତିଭା ପ୍ରକାଶ ପାଇଛି ।

—୪୦୪—

# ପ୍ରଭାବଶାଳୀ ଭଞ୍ଜ-ସାହିତ୍ୟ

ଜଗତ ଚିରଦିନ ପ୍ରତିଭାର ପୂଜା କରି ଆସିଛି । ସ୍ମୃତିର ନିଭୃତ ମନ୍ଦିରରେ ତାର ଉଜ୍ଜ୍ୱଳ ମୂର୍ତ୍ତି ସାଇତି ରଖିଛି । ସେଥିପାଇଁ ଯେତେ ବୀର, ଯେତେ ବିପ୍ଲବୀ, ଯେତେ ପ୍ରେମିକ, କବି, ଦାର୍ଶନିକ ଜୀବନ-ଲୀଳା ଶେଷ କରି କାଳ ସ୍ରୋତରେ ଲୀନ ହୋଇ ଯାଉଛନ୍ତି; ସେମାନେ ମରି ମଧ୍ୟ ମରିଯାଇ ନାହାଁନ୍ତି— ଅମର ଜୀବନ ନେଇ ଆସନ ପାତିଛନ୍ତି ମାନବ ଜଗତର ପ୍ରାଣେ ପ୍ରାଣେ, ଅନ୍ତରେ ଅନ୍ତରେ । ଗଗନ ପବନରେ ଭାସି ଉଠୁଛି ସେମାନଙ୍କ କର୍ମ ବାଣୀର ଝଂକୃତ ।

ଏ ଦୃଷ୍ଟିରୁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଆଜି ମରିଥିଲେ ବି ମରି ନାହାନ୍ତି । ମାଲକାନଗିରିଠାରୁ ରାଉରକେଲା ପ୍ରଭୃତି ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ଭଞ୍ଜଜୟନ୍ତୀରେ ତାଙ୍କର ଭୂଙ୍ଗ ପ୍ରତିଭାର ଶ୍ରେଷ୍ଠ ନୈବେଦ୍ୟ ଓଡ଼ିଆ ଆଜି ଦେଇ ବି ଦେଇନାହିଁ । ତଥାପି ଭଞ୍ଜ-ସାହିତ୍ୟର ପ୍ରଭାବ ଆଜି ସୁଦୂରପ୍ରସାରୀ । ଆଜି ଏହି ଅତ୍ୟାଧୁନିକ ଗଦ୍ୟ ଛନ୍ଦ ଯୁଗରେ ମଧ୍ୟ ତାଙ୍କର ପ୍ରଭାବ ଅପ୍ରତିହତ ।

* "କିଏ ଭାବ ବୈଭବ, କିଏ ରଚନା ପାଟବ, କଳ୍ପନା ଚାତୁରୀ, ବିଷୟବସ୍ତୁ, ସଙ୍ଗୀତକଳା ଅଥବା କିଏ ସେଥିରୁ ଏକାଧିକ ଗ୍ରହଣ କରି ନେଇଛନ୍ତି ।"

---

* ଓଡ଼ିଆ କାବ୍ୟ କବିତାରେ ଭଞ୍ଜୀୟ ମୁଦ୍ରାଙ୍କନ— ଅଧ୍ୟାପକ ବାସୁଦେବ ସାହୁ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ସ୍ମରଣିକା ବାରିପଦା ଭଞ୍ଜଜୟନ୍ତୀ ସମିତି ୧୯୬୪—ପୃ ୫୧ ।

ଓଡ଼ଗାଁର ପବିତ୍ର ସାଧନ ପୀଠରେ ନଅ ମାଇଲ ଦୂର ବର୍ତ୍ତୀ ଝିଙ୍କାରପଡ଼ା ଗ୍ରାମର ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଭଞ୍ଜୀୟ ଭାବ ଓ ବର୍ଣ୍ଣନା ସୌଷ୍ଠବ ଦ୍ୱାରା ପ୍ରଭାବିତ ହୋଇଥିଲେ । ଅଳଙ୍କାର ଓ ଭାଷା ପ୍ରୟୋଗରେ ଉପେନ୍ଦ୍ରଙ୍କୁ ସେ ଆଦର୍ଶ ସ୍ଥାନୀୟ ଧରିଥିଲେ । ଉପେନ୍ଦ୍ର ସାହିତ୍ୟ-ସାଗରରେ ନିମଜ୍ଜିତ ହୋଇ ସଦାନନ୍ଦ ଗାଇ ଉଠିଥିଲେ—

'ଉପଇନ୍ଦ୍ର ସୁକବି ନିତ୍ୟରସ ଅନୁଭବୀ
କୃଷ୍ଣ ଉପାସକ ନୋହିଁ କି କାର୍ଯ୍ୟ ଏହି । (ଯୁ.ର.ଉ.)

ଉପେନ୍ଦ୍ରଙ୍କର ସୁକବିତ୍ୱକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ନିତ୍ୟରସ-ଆସ୍ୱାଦନକାରୀ ଭଞ୍ଜଙ୍କ ଦ୍ୱାରା ସଦାନନ୍ଦ କପରି ପ୍ରଭାବିତ ତାହା ଦେଖିବାର କଥା । ଉପେନ୍ଦ୍ରଙ୍କର—

ଏଥୁ ଅନ୍ତେ ଶୁଣ ରସ ଗ୍ରୀଷମେ ନିଶି ପ୍ରବେଶ
ଉଦୟେ ତାରାଗଣବେଶ ହେଲେ ଆକାଶେ
ଚନ୍ଦ୍ରମୁଖ-ଚନ୍ଦ-ବନ୍ଦ କି ଅବା ହୀରକ ଚନ୍ଦ (ଲ ୧୧।୧)

ସଦାନନ୍ଦଙ୍କର:—

"ଏମନ୍ତ ନିଦ୍ରା ଆବେଶ । କ୍ରମେ ହେଲା ନିଶି ଶେଷ ॥
ହସିଲା ଦିଶ ଅରୁଣ । ଉଦେ ଅରୁଣ ଯେ ॥
ଜବା ଚନ୍ଦ ଦୃଃଖ ଚନ୍ଦ, ନନ୍ଦ ଘାତୁକ ଏ ଚନ୍ଦ ॥
ପେଶିଲା ଅନ୍ତ ନାଶକ । ରଜତ ବର୍ଣ୍ଣ ଯେ ।
(ଲ. ଲୋଚନା)

ତୁଳନା କଲେ ଭଞ୍ଜୀୟ ଭାବ ଓ ଭାଷାଗତ ପ୍ରଭାବ ଯେ ସୁସ୍ପଷ୍ଟ ଏହା ସହଜରେ ଅନୁମିତ ହୁଏ । ଭଞ୍ଜଙ୍କର—

ସାରଙ୍ଗ ଉଦପଲଙ୍କେ, ସାରଙ୍ଗ ପଙ୍କିଳ ପଙ୍କେ
ସାରଙ୍ଗୀମୁଖୀ ସାରଙ୍ଗ ସାରଙ୍ଗୀରେ ମାତିଲେ ।
(ସ. ଉପେନ୍ଦ୍ର ଭଞ୍ଜ)ର ପ୍ରଭାବ

ସଦାନନ୍ଦଙ୍କ:—

ସାରଙ୍ଗ ତରୁତଳେ ସାରଙ୍ଗ ଧର ଦେହେ
ସାରଙ୍ଗମୁଖୀ ଦେଖଇଲଟି
ସାରଙ୍ଗ ସାରଙ୍ଗରେ, ସାରଙ୍ଗ ସାରଙ୍ଗରେ
ସାରଙ୍ଗ ସାରଙ୍ଗ ଦେଓଟି ଗୋ ସଜନୀ ।"
(ଯୁ.ର.ଲ.)ରେ

ଦେଖାଯାଏ । ଏଠାରେ ସଦାନନ୍ଦ ଭଞ୍ଜଙ୍କର ଭାବ ଓ ଭାଷାଦ୍ୱାରା କେବଳ ପ୍ରଭାବିତ ନୁହଁନ୍ତି, ତାଙ୍କର ଯମକ ଅଳଙ୍କାରକୁ ସମ୍ପୂର୍ଣ୍ଣ ଭାବରେ ଅନୁକରଣ କରିଅଛନ୍ତି । ପୁନଶ୍ଚ ସଦାନନ୍ଦଙ୍କ—

"ବନ୍ଧୁରେ ମୋ ତନୁ ଦାହ, ଭସ୍ମ ପଡ଼ିଥିବ ଉହ
କଦବା ଭୁ ଯମୁନାକୁ ଗଲେ, ଉଡ଼ଣ ପବନ ବଳେ
ପଡ଼ିବ ତୋ ପାଦ ତଳେ,
ଖାଇଁ ମୁଁ ଉଠିବ ମରିଥିଲେରେ ।" (ଯୁ.ର.ଲ.)

ଉପରେ ଭଞ୍ଜଙ୍କର ଲାବଣ୍ୟ ବତୀର—

"ପୁଣି ବିରହ ଅନଳେ ଦହନ,
ହୋନ୍ତା ଏ ମୋହର ତନୁ ବହନ
ଭସ୍ମ ଉଡ଼ାଇ କୃପାରେ ପବନ,
ନେଇ ପକାନ୍ତା କାନ୍ତା ସନ୍ନିଧାନ

× × × ×

ହୋଇ ମୂର୍ତ୍ତିମନ୍ତ ମୁଁ ଗୃହିଁ ମୁଖ,
କର ଯୋଡ଼ି କହନ୍ତି ସବୁ ଦୁଃଖ ।"

ପ୍ରଭାବ ପରିଦୃଷ୍ଟ ହୁଏ । ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀର 'ନୂତନ ଅଳି କ ପ୍ରାପ୍ତ ହୋଇଲା ନୟନ'ର ପ୍ରଭାବ ସଦାନନ୍ଦଙ୍କର 'ମୋହନ କଳ୍ପଲତା'ର 'ଜନ୍ମ ଅଳି କବା ନେତ୍ର ପ୍ରଦାନ' ପ୍ରସ୍ତାବରେ ପ୍ରଭାବିତ ।

ଏ ତ ଗଲା ଅଭିମନ୍ୟୁଙ୍କ ଗ୍ରନ୍ଥଙ୍କ ଉପରେ ଭଞ୍ଜଙ୍କର ପ୍ରଭାବ । ବର୍ତ୍ତମାନ ଶିଷ୍ୟ ଅଭିମନ୍ୟୁ କପରି ଭଞ୍ଜଙ୍କ ଦ୍ୱାରା ପ୍ରଭାବିତ, ତାହା ଦେଖିବାର କଥା । ବିଦଗ୍ଧ ଚିନ୍ତାମଣିକାର ଅଭିମନ୍ୟୁ ସାମନ୍ତ ସିଂହାର ସ୍ୱରଚିତ କାବ୍ୟରେ ଲେଖିଛନ୍ତି—

ଉପଇନ୍ଦ୍ର ପଦ ଅଭିମନ୍ୟୁ ମନୁଁ
ଉପେକ୍ଷା ଯେ ନୋହିବ ତ ଦିନୁ ଦିନୁ ।
(ବି ୮ ମ ଛାନ୍ଦ)

ଏଥିରୁ ସ୍ପଷ୍ଟହୁଏ ଯେ ବିଦଗ୍ଧ ଚିନ୍ତାମଣି କାବ୍ୟର ଛନ୍ଦେ ଛନ୍ଦେ କବି ସାମନ୍ତ ସିଂହାର ଉପେନ୍ଦ୍ର ଭଞ୍ଜଙ୍କ ସାର୍ବଭୌମିକ ପ୍ରଭାବକୁ ଛାଡ଼ି କପରି ପ୍ରତ୍ୟେକ ଛାନ୍ଦରେ ପ୍ରାୟ ତାଙ୍କର ପଦାଙ୍କ ଅନୁସରଣ କରିଛନ୍ତି । ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣିର ୩୦ ଛାନ୍ଦ ଭଞ୍ଜଙ୍କର ଲାବଣ୍ୟବତୀର ୧୧ ଛାନ୍ଦ ଭାଷା, ଭାବ, ଛନ୍ଦ, ଅଳଙ୍କାର ଆଦି ଦୃଷ୍ଟି ଦିଗରୁ ଏକ ପ୍ରତିଫଳନ କହିଲେ ଅତିରଞ୍ଜିତ ହେବ-ନାହିଁ । ସନ୍ଧ୍ୟା ବର୍ଣ୍ଣନାରେ ଉପେନ୍ଦ୍ର ଭଞ୍ଜ ଲେଖିଛନ୍ତି:—

ଏଥିଅନ୍ତେ ଶୁଣ ରସ ଗ୍ରୀଷମେ ନଶି ପ୍ରବେଶ
ଉଦୟ ତାରଙ୍କାବେଶ ହେଲେ ଆକାଶେ

ଚନ୍ଦ-ମୁଖ ଚନ୍ଦ-ନନ୍ଦ . ଛେଦନେ ସ୍ମାରକ ଚନ୍ଦ
ଫିଙ୍ଗିଛୁ ତାଡସିନ୍ଧିରେ କାମ କ ରୋଷେ
ବେଶ ହେବ କ ସ୍ଵନ ବାଳୀ
ସ୍ଫଟିକ ପେଲୀରେ କ କବା କସ୍ତୁରୀ ଦଳ (ଲ୍-୧୧।୧)

ତାଡ ସିନ୍ଧି କ ବଳବ ବସ୍ତୁର କ କାମଦେବ
ମାଣିକ୍ୟ ସ୍ନିଗ୍ଧ ରଥାଙ୍ଗ ପେଷି ଦେଇଛୁ,
ବିଯୋଗୀ ସୁଖ-ଦୁଃଖଦ ସଂଯୋଗୀ ସୁଖ-ଦୁଃଖଦ
ପରସ୍ପର ବିରୋଧ ଭାଷକୁ କରୁଛୁ
ତମ ନାଶନେ ତ ପ୍ରୟୋଗ
ତମ ପଣେ, ତମୁଁ ଆସେ, ଏ କ ସଂଯୋଗ (ବ-୩୦।୩)

ଅଣିମାଦ୍ଧ ସୁଖଦାୟୀ ଶୋଇଅଛୁ ଅଣି ହୋଇ
ପଲ୍ୟଙ୍କ ଅଙ୍କରେ ଦଶେ ଏମନ୍ତ ଶୋଭା
ଉପାଣ ରଜତ ବାଡ଼େ କନକ ଲତା କ ଜଡ଼େ
ବିଷଦ ଘନରେ କ ସେ ଚପଳା ପ୍ରଭା ।
ବାମକର କପୋଳ ତଳ
କେନ୍ଦୁ ପଲ୍ଲବେ ଥୁଆ କ ଫୁଲ୍ଲ କମଳ (ଲ୍-୧୧।୧୨)

ବିଶ୍ବଚକ୍ର ବଶ ପାଇଁ ପ୍ରୀତି ମୂର୍ତ୍ତିବନ୍ତ ହୋଇ
ଅଣିମାଦ୍ଧ ଦେବ ଅଣିଆଇ ଶୋଇଛୁ
ପାଣି ଦେବା ଗଣ୍ଡସ୍ଥଳେ ଶଶୀ କୋକନଦ କୋଳେ
ପଦ୍ମୁଡ଼ବାର ଶୋଭାକୁ ହସି ଦେଉଛୁ;
କୃଷ୍ଣବର୍ଣ୍ଣ ଶେଯେ ଶୟନ,
ସକଳ ଘନେ ସ୍ଥଳିତ ବିଦ୍ୟୁ ସମାନ (ବ-୩୦।୧୯)

ଭଜୁ ନ ଭଜ, ବାନ୍ଧବୀ ଆଗ ମୁଁ ନିଦ୍ରା ଭାଙ୍ଗିବି
ତନୁହେଲେ ଛୁଇଁଥିବି ଏ ବଡ଼ ଲାଭ
ଯେ ପାରେ ବାଳା ମଜାଇ ନିଷ୍ଠେ ମଞ୍ଚେ ଇନ୍ଦ୍ରସେହି
ମନରେ ଭାବନା କରି ପରମ ଶୁଭ
ଜାନୁଧରି ଦେଲା ଟାଙ୍କୁଲାଇ
ଧ୍ୱଂସ-କର ଲାଗି ନିଦ୍ରା ବିନାଶ ହୋଇ (ଲା-୧୧।୨୫)

ଭାଗ୍ୟ କଳ୍ପତରୁ ଫଳ କେତେ ମାନିକ ଏ ଫଳ
ପାଇ ନିଷ୍ଫଳ ହେଲେ କି ପ୍ରାଣ ରହିବ,
କରୁ ନକରୁ ସ୍ୱୀକାର ଛୁଇଁଥିବି କଳେବର
ଦୁଇମତେ ଅମୃତ-ଦାୟୀ ତ ହୋଇବ
ଏତେ ଭାଳି ଆତୁର ହୋଇ
ଧୀରୁ ଗୃରୁ ଉରୁ ଧରି ଦେଲେ ଟାଙ୍କୁଲାଇ (ବ-୩୦।୩୭)

ଉଠି ଭାଙ୍ଗନ୍ତେ ଅଳସ କି ଶୋଭା କୁଚ କଳଶ
ଟେକି ହୁଏ କି ମେରୁକୁ ଜିଣିବା ଗର୍ବେ ।
ଊର୍ଦ୍ଧ୍ୱେ ଛନ୍ଦି କର ବେନି ଶୋଭା ଲପନକୁ ଘେନି
ଚନ୍ଦ୍ରେ କି ବନ୍ଧୁପରିଧି ହୋଇଲା ଏବେ
ମୁଖ ଜୃମ୍ଭାବଶେ ରାଜିତ
ଦରବିକଶିତ କୋକନଦ ଯେମନ୍ତ (ଲା-୧୧।୨୬)

ନିଦ୍ରା ମୁଦ୍ରା ଗଲା ଭାଙ୍ଗି ଆଳସ୍ୟ ଭାଙ୍ଗିବା ଭଙ୍ଗୀ
କୁଚ ମଙ୍ଗଳ କଳଶ ଦେଖାଇଲା କି ?
ଊର୍ଦ୍ଧ୍ୱ କରି ଛନ୍ଦି ପାଣି କି ଶୋଭା ଶ୍ରୀମୁଖ ଆଣି
ହେମ ପ୍ରଭାରେ ଚନ୍ଦ୍ରମା ବଢେ କଳଙ୍କି ?
ଜୃମ୍ଭାକାଳେ ତୁଣ୍ଡ ମାଧୁରୀ,
ରଙ୍ଗ ସମ୍ପୁଟକ ଅର୍ଦ୍ଧ ଫିଟିଲା ପରି (ବ-୩୦।୩୮)

"ଉପେନ୍ଦ୍ର ଯେଉଁ କାବ୍ୟ ପଦ୍ଧତିର ସ୍ରଷ୍ଟା ବା ଦେଶିକ ତାହାର ସେ ପଥିକ, ଉତ୍କୃଷ୍ଟ ପଥିକ; ଉପଯୁକ୍ତ ମର୍ମଗ୍ରାହୀ × × ଅଭିମନ୍ୟୁ ସ୍ୱଗୁରୁଙ୍କ ବିବେଚକତାର ସାହାଯ୍ୟରେ ଓ ସ୍ୱୀୟ ବିବେକ ଚାଳନାରେ ଚାଳିତ ହେଲେ ହେଁ ସ୍ଥଳ ବିଶେଷରେ ଉପେନ୍ଦ୍ରଭଞ୍ଜୀୟ ପାଣ୍ଡିତ୍ୟ ଦେଖାଇ ସ୍ୱଗୁରୁଙ୍କୁ ବଳପାଇ ନିଜ ଶକ୍ତିର ପରିଚୟ ଦେଇଛନ୍ତି ସତ୍ୟ; କିନ୍ତୁ ସେ ପ୍ରସଙ୍ଗରେ ଆପଣାର ସ୍ୱାତନ୍ତ୍ର୍ୟ ଦେଖାଇବାରେ କୃତକାର୍ଯ୍ୟ ହୋଇ ନାହାନ୍ତି । ସ୍ଥାନେ ସ୍ଥାନେ ଉପେନ୍ଦ୍ର ଭଞ୍ଜଙ୍କ ଭାବକୁ ଅବିକଳ ଅବଲମ୍ବନ କରି ଚୌର୍ଯ୍ୟବୃତ୍ତି ଆଚରଣ କରିଅଛନ୍ତି । ସରଳତାରେ କିନ୍ତୁ ସେ ରସିକ ହାରାବଳୀ ଓ ଲାବଣ୍ୟବତୀର କବିଙ୍କୁ ବଳି ପଡ଼ିଛନ୍ତି । × × କରୁଣ ଓ ଶୃଙ୍ଗାର ରସ ସରଳ ଓ ସହଜ ଏବଂ ହୃଦ୍ୟ ଭାଷାରେ ଅଭିବ୍ୟକ୍ତ ଲାଭ କରିଥିବାରୁ ଏହା ଭଞ୍ଜଙ୍କ କୃତିମାନଙ୍କଠାରୁ ମଧ୍ୟ ବିଶେଷ ଲୋକଗ୍ରାହୀ ଓ ଲୋକପ୍ରିୟ ହୋଇଛନ୍ତି । ଅଭିମନ୍ୟୁ, ଉପେନ୍ଦ୍ର ଓ ସାଧୁଚରଣଙ୍କଠାରୁ ଅଧିକ ଭାଗ୍ୟବନ୍ତ, କାରଣ 'ବିଦଗ୍ଧ'ର ଛାନ୍ଦ ଯେପରି ଲୋକପ୍ରିୟ, ଅନ୍ୟ କୌଣସି ସେପରି ନୁହେଁ । ଅଭିମନ୍ୟୁଙ୍କ ସ୍ୱାତନ୍ତ୍ର୍ୟ ବିଚାରରେ ମୁଁ କହେ ଯେ ଉପେନ୍ଦ୍ର ଭଞ୍ଜ ଓ ସାଧୁଚରଣଙ୍କୁ ଗୁରୁକରି ସେ ଯେ କାବ୍ୟ ନିର୍ମାଣ କରି ଅଛନ୍ତି, ତାହାର ଭକ୍ତି ବିଷୟ ହେତୁ ସେମାନଙ୍କ କୃତିଠାରୁ ଉଚ୍ଚ ଓ ହୃଦୟସ୍ପର୍ଶୀ ।"

—(ବିଦଗ୍ଧ ଚିନ୍ତାମଣି ମୁଖବନ୍ଧ, ପ୍ରଥମଖଣ୍ଡ)

ବଡ଼ଦାର ରାଜା ଚନ୍ଦ୍ରଶେଖର ଭଞ୍ଜ (୧୭୨୫-୧୭୭୦) ପ୍ରେମ ମଞ୍ଜରୀ ନାମକ ଖଣ୍ଡିଏ କାଳ୍ପନିକ କାବ୍ୟ ଲେଖିଥିଲେ । ତାହା ୧୯୦୦ ଖ୍ରୀ:ଅରେ ବଡ଼ଦାର ଜଗଦୀଶ ପ୍ରେସରୁ ପ୍ରକାଶିତ ହୋଇଥିଲା । ସେ ଉପେନ୍ଦ୍ର ଭଞ୍ଜଙ୍କ ସମସାମୟିକ । ଏହି କାବ୍ୟ ପାଠ କଲା ସମୟରେ ଭଞ୍ଜଙ୍କର ଲାବଣ୍ୟବତୀର ପଦମାନଙ୍କର

ପ୍ରଭାବ ସମ୍ବନ୍ଧରେ ଅନୁମିତ ହୁଏ । ବନବିହାର ବର୍ଣ୍ଣନା, ନାୟିକାର ବେଶବର୍ଣ୍ଣନା ଓ ମଧୁଶଯ୍ୟା ବର୍ଣ୍ଣନାରେ ଲାବଣ୍ୟବତୀର ଛାୟା ଲକ୍ଷିତ ହୁଏ ।

ରଘୁନାଥ ଭଞ୍ଜ (୧୭୨୮-୧୭୫୦) ମୟୂରଭଞ୍ଜର ରାଜା 'ରସଲହରୀ' ନାମକ ଖଣ୍ଡିଏ କାଳ୍ପନିକ କାବ୍ୟ ରଚନା କରିଥିଲେ । ତାଙ୍କ ରଚନାରେ ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀର:—

'ଉଦ୍ୟାନ ପ୍ଲବନେ ଉରଜମାନ କି ମନୋହର'

× × ×

ରସଲହରୀର:—

'ଉଦ୍ୟାନ ହୋଇ ଜଳରେ ପଡ଼ି କ୍ରୀଡ଼ା କରନ୍ତି ରମଣୀମାନେ,
ସୁବର୍ଣ୍ଣ-ପଙ୍କଜ-କୋରକ ଭ୍ରମକୁ କରାଇଲେ ନଜସ୍ତନେ ।

ଉପବନ ବିହାର ବିଶେଷତଃ ଉପେନ୍ଦ୍ର କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଓ ଲାବଣ୍ୟବତୀ କାବ୍ୟରେ ଅତି ଜୀବନ୍ତ ଚିତ୍ର ପ୍ରଦାନ କରି-ଅଛନ୍ତି । କବି ରଘୁନାଥ ଭଞ୍ଜ ସେହି ଶୈଳୀର ଅନୁସରଣ ଅନେକ ସ୍ଥଳରେ କରିଛନ୍ତି । ଚିନ୍ତା ବର୍ଣ୍ଣନ, ପଦଯୋଜନା ଓ ଭାବରେ ସାମ୍ୟ ଅଧିକାଂଶ ସ୍ଥଳରେ ଥିଲେ ମଧ୍ୟ ତାଙ୍କର ପ୍ରତିଭା ପ୍ରତ୍ୟେକ କ୍ଷେତ୍ରରେ ସ୍ପଷ୍ଟତର ହୋଇଛି ।

"କେତକୀ ଜଳ ଝରିଏତ
ସେହି ସୁବାସରେ ପାଶକୁ ଭ୍ରମର ଶ୍ରେଣୀ ହେଉଛନ୍ତି ଆଗତ ।"
(କୋ-୧୦୨୦)

କଉଭୃକମାନ କରନ୍ତେ ଗମନ କରି ଉପବନ ପାଶରେ,
ଦେଖିଲେ ସୁଷମ କେତକୀ କୁସୁମ ଅଳିବୃନ୍ଦ ଧ୍ୱନି ଉଚରେ ।

ନିଃଶଙ୍କରାୟ ରାଣୀ 'ପଦ୍ମାବତୀ ଅଭିଳାଷ'ର ରଚୟିତ୍ରୀ । ଏଥିରେ ଉପେନ୍ଦ୍ର ଭଞ୍ଜଙ୍କର 'ଦଶପୋଇ'ର ପ୍ରଭାବ ଅଛି । ଉପେନ୍ଦ୍ର ଭଞ୍ଜ ଦଶପୋଇରେ ବର୍ଣ୍ଣନା କରିଛନ୍ତି—

'ହତ ପଲାଶ ପଲାଶ ହୋଇ ପୁଷ୍ପବେଶ
ଅନଙ୍ଗ ଅନଳ ପ୍ରାୟ ଦିଶେ (ଦଶପୋଇ)

ପଲାଶ-ଲତା ପଲାଶ ଦୂରକରି ପୁଷ୍ପେ ହୋଇଛନ୍ତି ସୁବେଶ
ହୋମ-ଅନଳ ଜ୍ୱଳିବା ପରି ଦିଶେ ବର-କନ୍ୟାଙ୍କର ପାଶ ।
(ପଦ୍ମାବତୀ ଅଭିଳାଷ)

ଏତିକି ନୁହେଁ ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀର ୬ଷ୍ଠ ଛାନ୍ଦର:—

"କି ମାଳଶାଢ଼ୀ ରଙ୍ଗଧଡ଼ି ହଂସାବଳୀ ହୋଇଛି,
ଅବମା ବନିତା ବସ୍ତ୍ରରେ କିବା କଷିବା ଇଚ୍ଛି ।
ପାବକ ସ୍ୱଚ୍ଛ ସ୍ଫଟିକରେ ମାରି ଛାରେ ପ୍ରଖ୍ୟାତ,
ସ୍ୱବେଣୀ ସ୍ପର୍ଶ ଭାବ କି ତହିଁ ତ୍ରିବେଣୀ ଖ୍ୟାତ ।

\+ \+ \+

ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ (ଲା-୬ । )

ନିଃଶଙ୍କ ରାୟରାଣୀଙ୍କ:—

"ମାଳଧାଡ଼ି ହଂସାବଳୀ ଶୋଭନ
ମଣିମଣ୍ଡଳା ବସ୍ତ୍ରରିବା ପ୍ରାୟେ ଦିଶେ ରଞ୍ଜନ
ପଦ୍ମକୁମୁଦ କୋକନଦର ସୁବାସ ଘେନ
ଭ୍ରମରେ ଭ୍ରମରେ ଭ୍ରମନ୍ତି କରି ହରଷ ଧ୍ୱନି ।

ଏଣୁ ନିଃଶଙ୍କ ରାୟରାଣୀ କେବଳ ଭଞ୍ଜଙ୍କ ଭାବ ଓ ଭାଷା ଅନୁକରଣ କରି ନଥିଲେ, ଆଳଙ୍କାରିକ ଶୈଳୀରେ ମଧ୍ୟ ପ୍ରଭାବିତ ହୋଇଥିଲେ ।

ରାଜା ପୁରୁଷୋତ୍ତମ ମାନଧାତାଙ୍କ 'ଶୋଭାବତୀ' କାବ୍ୟ ଭଞ୍ଜଙ୍କ ପ୍ରେମକାବ୍ୟ ସରଣୀରେ ଲିଖିତ । ଭଞ୍ଜ ଏହାଙ୍କ ସମୟରେ ନୟାଗଡ଼ରେ ରହି ଥିବାର କେତେକ ଅନୁମାନ କରନ୍ତି ।

ମଥୁରାମଙ୍ଗଳ କାବ୍ୟରେ ଭକ୍ତଚରଣ ଉପେନ୍ଦ୍ର ଭଞ୍ଜଙ୍କ ଅଳଙ୍କାର, ରୂପବର୍ଣ୍ଣନା ଓ ବିରହ ବର୍ଣ୍ଣନା ଦ୍ୱାରା ପ୍ରଭାବିତ ।
ଉପେନ୍ଦ୍ରଙ୍କ:—

"ଅବଶ୍ୟ ପିଣ୍ଡୁ ଥରେ ଯିବ ଜୀବନ
ତା ଲାଗି ଗଲ୍‌ଜାଣୁ ଜୀବଜୀବନ ।' (ପ୍ରେ-୯) ର ପ୍ରଭାବ

ମଥୁରାମଙ୍ଗଳକାରଙ୍କ:—

"ତୁମ ପଛେ ପଛେ ଜୀବ ଯିବ
କାହିଁ ପାଇଁ ଏ ପିଣ୍ଡରେ ଥିବ' ଉପରେ ପଡ଼ିତ ।

କବି ବ୍ରଜନାଥ ବଡ଼ଜେନା ଅନେକାଂଶରେ ଉପେନ୍ଦ୍ର ଭଞ୍ଜଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ତାଙ୍କର ସମର ତରଙ୍ଗ, ଗୋପି-ବିଳାପ, ଗୁଣ୍ଡିଚା ବିଜେ, ଚତୁର ବିନୋଦ, ଶ୍ୟାମରାସୋତ୍ସବ, କେଳିକଳାନିଧି, ବିଚକ୍ଷଣା, ତ୍ରିଭୁବନ ସୁନ୍ଦରୀ ଓ ଦଶପୋଇ ପ୍ରଭୃତିରେ ଉପେନ୍ଦ୍ରଙ୍କ ସ୍ପଷ୍ଟ ମୁଦ୍ରାଙ୍କ ସୂଚିତ ହୁଏ । କେଉଁଠାରେ ବ୍ରଜନାଥ ଭଞ୍ଜଙ୍କ ଆଳଙ୍କାରିକତା, କେଉଁଠାରେ ହୁଏତ ଭଞ୍ଜଙ୍କର ଶବ୍ଦବିନ୍ୟାସ, କେଉଁଠାରେ ବା ଭାବପ୍ରକାଶ, କେଉଁଠାରେ ବା ବୃତ୍ତବାଣୀ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ଭଞ୍ଜଙ୍କ 'ପ୍ରେମସୁଧା-ନିଧି'ରେ ଅଛି:—

"ଗୃହିଁ କୁମର କାତର
ଲେଖି ଆରମ୍ଭିଲା ବସି ବିନୟ ପତର" (୧୪ ଛାନ୍ଦ)

"କାମେ କୁମର କାଟର
କାନ୍ତଠାକୁ କେଶାକେଟେ ଧନସ୍ତୁ ଉତ୍ତର ।" (କେକି କଳାନିଧି ୧୧)

"ଏତେ ହଟ କାହିଁ ପାଇଁ
ମୋହ ଜାଣିବାରେ ମୁଁ ତ ଦୋଷ କରନାହିଁ ।" (ଭଞ୍ଜ, ପ୍ରେ-୧୪)

"ମୋ ଜାଣିବାରେ ଦୋଷତ ବାରେ ନାହିଁ ।" (କେକିକଳାନିଧି-୧୨)

ସମର ତରଙ୍ଗ ଉପରେ ଉପେନ୍ଦ୍ରଙ୍କର ସୁଭଦ୍ରା ପରିଣୟର ଚଷ୍ଟ ଗ୍ରନ୍ଥର ଚାହାଣିଆ କେଦାର ବାଣୀର ପ୍ରଭାବ ପଡ଼ିଛି ବୋଲି ଅଧିକାଂଶ ସମାଲୋଚକ ମତ ଦେଇଥାନ୍ତି । ବ୍ରଜନାଥ ଅମ୍ବିକା ବିଳାସକୁ 'ଅ' ଆଦ୍ୟ ଅକ୍ଷରରେ ରଖି ଲେଖିବା ଲାଗି ଉପେନ୍ଦ୍ରଙ୍କ 'ବ' ଆଦ୍ୟ ଅକ୍ଷରରେ ରଖି ଲେଖିବା ବୈଦେହୀଶ ବିଳାସ ଢଙ୍ଗ ଦ୍ୱାରା ପ୍ରଭାବିତ ହୋଇଥିବାର ଅନୁମାନ କରାଯାଏ ।

କବିସୂର୍ଯ୍ୟ ବଳଦେବ ରଥ ଭଞ୍ଜଙ୍କ ପ୍ରଭାବର ବାହାରେ ନୁହନ୍ତି । ତାଙ୍କ ରଚିତ 'କିଶୋର ଚନ୍ଦ୍ରାନନ ଚମ୍ପୂ', 'ରତ୍ନାକର ଚମ୍ପୂ', 'ସଙ୍ଗୀତ କଳ୍ପଲତା' ଓ 'ଚନ୍ଦ୍ରକଳା'ର ଅଧିକାଂଶ ଗ୍ରନ୍ଥ, ଚମ୍ପୂ ଉପେନ୍ଦ୍ରଙ୍କର ପ୍ରଭାବରେ ପ୍ରଭାବିତ । ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟିକ ଓ ସାଙ୍ଗୀତିକ ପ୍ରଭାବ ଦ୍ୱାରା ବିଶେଷ ଭାବରେ କବିସୂର୍ଯ୍ୟ ପ୍ରଭାବିତ ହୋଇଥିଲେ । ଅଧ୍ୟାପକ ବାସୁଦେବ ସାହୁଙ୍କ ମତରେ, "କାବ୍ୟର ନାମକରଣ, ବିଷୟ ବସ୍ତୁର ସଂଯୋଜନା, କାବ୍ୟାଦର୍ଶ ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତା ପ୍ରଦର୍ଶନ, ବର୍ଣ୍ଣନା ଗାମ୍ଭୀର୍ଯ୍ୟ, କଳ୍ପନା-ମାଧୁର୍ଯ୍ୟ (ଲୌକିକ ଓ ଅଲୌକିକ), ରସ ସମାବେଶ, ଅଳଙ୍କାର ପ୍ରୟୋଗ, ନାୟକ ନାୟିକାଙ୍କ ଚରିତ୍ର ଚିତ୍ରଣ, ରୂପବର୍ଣ୍ଣନା, ମିଳନ ମାଧୁର୍ଯ୍ୟ, ବିରହ-ବେଦନା, ପ୍ରକୃତି ବର୍ଣ୍ଣନା, ନଗର ବର୍ଣ୍ଣନା, ଗ୍ରନ୍ଥ, ସାଙ୍ଗୀତିକତା ପ୍ରତ୍ୟେକଟି ଦୃଷ୍ଟିରୁ 'ଚନ୍ଦ୍ରକଳା' ହେଉଛି "ଲାବଣ୍ୟ-ବତୀ"ର ଏକ କବିସୂର୍ଯ୍ୟୀୟ ସଂସ୍କରଣ ।"

ଉପେନ୍ଦ୍ର:—

"ଏହି ପ୍ରମାଣ ମାଣ ବକ ମୃଗାକ୍ଷୀ ଜାଣ
ପ୍ରାଣକୁ କେତେ ଦିନ ରଖି
ସମ ଅନୁରାଗରେ ନାହିଁ କହିଁ ନଗରେ
ସେହି ନାଗରେ ସାର ଲେଖାରେ
ମହତ ଯେ ଅଟଇ ସେହି
ମରଣକୁ ବରଣ କରିବେ ରଣ ରଣ
ବାଣଗଣ ଚାପକୁ ବହି ଯେ (ଲ-୨୨।୧୮)

କବିସୂର୍ଯ୍ୟ:—

ଆଜ ଏ କି ଗୁମାନରେ (ଚନ୍ଦ୍ରାନନା)
ଦେଖିନାହିଁ ସ୍ୱପନରେ । ପଦ ।

× × ×

ତୁ ବିନା ମୋର ପ୍ରାଣ, ରମଣୀଗଣ ରାଣ, ହଣିଅଛନ୍ତି ମାଣକେ-ମୃଗାକ୍ଷୀ ଜାଣ, ଦାରୁଣ ସ୍ମରଗଣ, ଶାଣଦିଆ ତୀକ୍ଷଣ ବାଣଗଣରେ ନଷ୍ଟେ ନେବଟି ଏ ପରାଣ । (ସଙ୍ଗୀତ କଳ୍ପଲତା)

କବି ଗୋପାଳକୃଷ୍ଣ ପଟ୍ଟନାୟକଙ୍କ ଓ କବି ବନମାଳୀ ପଟ୍ଟନାୟକ-ଙ୍କର ସଙ୍ଗୀତାବଳୀର ନାୟିକାନାୟକ ରାଧାକୃଷ୍ଣ ହୁଅନ୍ତୁ ନା କାହିଁକି, ଭାବ ଦୃଷ୍ଟିରୁ ନ ହେଲେ ବି ରାଗରାଗିଣୀ ଦୃଷ୍ଟିରୁ ଏ ଉଭୟେ ଭଞ୍ଜଙ୍କ ଦ୍ୱାରା ପ୍ରଭାବିତ ।

ଉପେନ୍ଦ୍ର:—

ଦିନେ ଯେ ସୁବେଶୀ ବସି ଗୋପ୍ୟ ମନ୍ଦିରରେ
ଦେଉଥିଲି ରତିବେଶ ଏହି ପରକାରେ ।

ଚନ୍ଦ୍ର ଚନ୍ଦନ ମିଶାଇ ଗୋଳଅଛି ଚୂଆ
ଚୁହିଁବାକୁ ଦର୍ପଣ ହୋଇଛି ଆଗେ ଅୂଆ
(ଭଞ୍ଜ-ଚଉପଦୀହାର)

ବନମାଳୀ:—

"ରତନ ଅଳକା ମଣ୍ଡି ଚକୁରେ
ଯେନେ ଦେଖୁଥିଲି ମୁଖ ମୁକୁରେ"

ଏଠାକାର ଭାବବେଶ ଓ ପରିବେଶ ଭଞ୍ଜୀୟ ଅନୁରୂପ ନୁହେଁ କି ?

ଉପେନ୍ଦ୍ର:—

"ବନ୍ଧୁ ତେମନ୍ତେ ମୁଁ ତୋର
ସବୁଠାରେ କୁହାଉଛି ସୁନ୍ଦରୀ କୋଯୁର ।" (ପ୍ରେ-୧୪।୫)

ଗୋପାଳକୃଷ୍ଣ:—

"ଏତେ ଭାଗ୍ୟ ମୋର ହେବକି
ହେବି ବୃନ୍ଦାବନେଶ୍ୱରୀ ସେବକୀ ।"

ଭାବଦୃଷ୍ଟିରୁ ଗୋପାଳକୃଷ୍ଣ ଭଞ୍ଜୀୟ ଭାବରେ ପ୍ରଭାବିତ ।

ନୟାଗଡ଼ ନିବାସୀ ଆଶୁକବି ଯଦୁମଣି ମହାପାତ୍ରଙ୍କ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' 'ରାଘବବିଳାସ' 'ରୁକ୍ମିଣୀ ପରିଣୟ'ରେ, ଭଞ୍ଜୀୟ ପ୍ରଜ୍ଞା, ପାଣ୍ଡିତ୍ୟ, ବହୁଶାସ୍ତ୍ରଦର୍ଶିତା, ରସିକତା, କଥାବସ୍ତୁ, ବିନ୍ୟାସ କୌଶଳ, ଆଳଙ୍କାରିକତା ଛନ୍ଦ ଓ ସର୍ବୋପରି ଚିତ୍ରାକର୍ଷିକତା ଶତଧା ବିକଶିତ । ଏହି କାବ୍ୟ ଗ୍ରନ୍ଥଙ୍କରେ ବୈଦେହୀଶ ବିଳାସ ଓ ଲାବଣ୍ୟବତୀର ମୁଦ୍ରାଙ୍କିତ । 'କ୍ଲିଷ୍ଟ' ରଚନା ସେତେବେଳେ ଉତ୍କୃଷ୍ଟ ସାହିତ୍ୟ ରୂପରେ ପରିଗଣିତ ହେଉଥିଲା । ଏଣୁ ଉପେନ୍ଦ୍ର ଭଞ୍ଜଙ୍କ ଅନୁକରଣରେ ଯଦୁମଣି ନିଜ ଶୈଳୀକୁ କ୍ଲିଷ୍ଟ କରିଥିଲେ । × ×

ଭଞ୍ଜଙ୍କ ପରି ସିଂହାବଲୋକନ, ମହାଯମକ ପ୍ରଭୃତି କ୍ଳିଷ୍ଟ ଶବ୍ଦାଳଙ୍କାର-ମାନ ସେ ବ୍ୟବହାର ନ କରିଥିଲେ ମଧ୍ୟ ଶ୍ଳେଷାଳଙ୍କାର ଯୋଗୁଁ କଠିନ ସଂସ୍କୃତ ଶବ୍ଦମାନ ବ୍ୟବହାର କରିଥିଲେ ।

(୧୭୯୧-୧୮୧୯) ମଧ୍ୟରେ ଜୀବିତ ବଳଭଦ୍ର ଭ୍ରମରବରଙ୍କ ଆଳଙ୍କାରିକ କାବ୍ୟ 'ଚନ୍ଦ୍ର ପ୍ରଭା' ସୂଚପୁର ଭଞ୍ଜୀୟ ଗ୍ରନ୍ଥ'ରେ ରଚିତ ।

ଚକ୍ରବାକ୍ ପଟ୍ଟନାୟକଙ୍କ 'କୃଷ୍ଣବିଳାସ' ଉପରେ ଭଞ୍ଜଙ୍କର ପ୍ରଭାବ ପଡ଼ିଛି ।

ଭଞ୍ଜ:—ପ୍ରବେଶ ହୋଇଲା ବରଷା କାଳ
ପ୍ରମାଦମାନଙ୍କ ଜଙ୍ଗମସ୍ଥଳ
ଜଳଦ କଜ୍ଜ୍ୱଳ କାନ୍ତ ଶାର୍ଦ୍ଦୂଳ
ମୁଖେ ବହରିଲେ ଶିଖରି ଚୂଳ
ଗର୍ଜି ତା ସନ୍ତତ, ପ୍ରକାଶି ଝଳ ବକାବଳୀ ଦନ୍ତ । (ଲ-୪୧।୧)

ଚକ୍ରପାଣି ପଟ୍ଟନାୟକ:—

"କ୍ରମଶେ ଗ୍ରୀଷମ ସମୟୁ ଶେଷ
ବରଷାକାଳ ହୋଇଲା ପ୍ରବେଶ
କଜ୍ଜ୍ୱଳକୁ ଜିତି କଳା ଜଳଦ
ନଭ କୁକୁଭ ଘୋଟିକଲା ନାଦ
× × ×
ଘନ ଘଡ଼ ଘଡ଼ ଗର୍ଜନ ଘୋଷ
ରସନା ବିଜୁଳି
ଦଶନପନ୍ତି ତା'ର ବକମାଳୀ"

ଭଞ୍ଜୀୟ ଭାବ, ଭାଷା, ଉପମା ଓ ଶୈଳୀର ଅପୂର୍ବ ପ୍ରଭାବ ଏହା ନୁହେଁ କି ?

ଏତଦ୍ ବ୍ୟତୀତ କବି ଚମ୍ପତିସିଂହଙ୍କର 'ସୁଲକ୍ଷଣା', ଶ୍ୟାମ-ସୁନ୍ଦର ଦେବଙ୍କ ଅନୁରାଗ କଳ୍ପଲତା", ମାଗୁଣି ପଟ୍ଟନାୟକଙ୍କ 'ରାମଚନ୍ଦ୍ର ବିହାର', କବି ଗଙ୍ଗାଧର ପଟ୍ଟନାୟକଙ୍କ 'ରସ କଳ୍ପଲତା' ପ୍ରଭୃତିରେ ଭଞ୍ଜଙ୍କ ପ୍ରଭାବ ସ୍ପଷ୍ଟୀକୃତ । ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ', ପଦ୍ମନାଭ ଶ୍ରୀଚନ୍ଦନଙ୍କ 'ଶଶିରେଖା', ହରିପୁରାରି ଦାସଙ୍କ 'କେଳି କଲ୍ଲୋଳ' ଏବଂ ଭୁବନେଶ୍ୱର କବିଚନ୍ଦ୍ରଙ୍କ 'ପୀତେଶ ବିଳାସ', ବାସୁଦେବ ବିଳାସ, ଦଶପୋଇ, ଚୌପଦୀ ମାଳା, ପ୍ରବନ୍ଧ ରତ୍ନାକରରେ ଭଞ୍ଜଙ୍କ ପ୍ରଭାବ ପରିଦୃଷ୍ଟ ହୁଏ ।

ଉପେନ୍ଦ୍ର:—

ସେତେବେଳେ କିଆର କହୁଛୁ କେଉଁ ସଖି (୩୪)
ଦେହାଳି ବଳି ଚଳିବା ସମୟରେ ତହିଁ ଗୋ
ନାଥ ହାତ ଧରି ଗୃହୁଁ ଆଇ ନେବେ ତୋତେ
ମଥାଟେକି କଥା ନକହିବୁ କଦାଚିତେ ଗୋ (୩୫)
କୋଳେଧରୁଁ ଶେଯେ ଖସି ବସୁଥିବୁ ବାଳା
ସୀଉକାର କରିବୁ ଖେଳାଇ କୋଣେ ଡୋଳା ଗୋ (ଲ-୩୨) (୩୬)

କେଶବ ପଟ୍ଟନାୟକ:—

ଜାନକୀଙ୍କି ବେଢି ସଖୀ ସୁବେଶ କରାଇ
ଅଙ୍ଗେ ଭରି ସବନାରୀ କହନ୍ତି ମଣାଇ
ସଖି ଆରେ ତୁ ସଧୀରେ କେଳିପୁରେ ଯିବୁ
କାନ୍ତ ଦେଖି ଚନ୍ଦ୍ରମୁଖୀ କାତର ନୋହିବୁ ।
ମୁଖପୋତି ରହିଁ କ୍ଷିତି ଥିବୁ ଉଦାହୋଇ
ଯେତେବେଳେ ତୋତେ ବଳେ ନେବେ କୋଳେ ସେହି
ଫୁଲଫିଙ୍ଗି-ପ୍ରଣୟଙ୍ଗୀ ଧାମ ଲଭାଇବୁ
କୋଳୁ ଖସି ତଳେବସି କଥା ନ କହିବୁ ।
(କେଶବ ରାମାୟଣ-୫୯ ଛାନ୍ଦ)

ଏଠାରେ କେଶବ ରାମାୟଣ ରଚୟିତ୍ରୀ କେଶବ କେବଳ ଭଞ୍ଜଙ୍କର 'ମାଳବ' ନାଗଦ୍ୱାରା ପ୍ରଭାବିତ ହୋଇ ତାହାଙ୍କ ଭାଷା ଓ ଭାବ ଏବଂ ପରିବେଶ ଦ୍ୱାରା ମଧ୍ୟ ପୂର୍ଣ୍ଣ ଭାବରେ ପ୍ରଭାବିତ ।

ଉପେନ୍ଦ୍ର ଭଞ୍ଜ—

ରାଜହଂସପଙ୍କ୍ତି ମୋତି-ସୀମନ୍ତ,
ହୀରା ପଦ୍ମଣିଆ ଅଗ୍ରରେ ଛତି ବଣା ଏକ ହଂସୀ,
କାଳନ୍ଦୀ ସ୍ରୋତେ ଯାଉଅଛି ଭାସି । (କୋ-୧୨।୯)

ବିଶ୍ୱନାଥ ଖୁଣ୍ଟିଆ—

ଫିଟିଛି କୁସୁମ ସହିତେ ବେଣୀ
କାଳନ୍ଦୀରେ ଭାସେ କି ହଂସ ଶ୍ରେଣୀ ।
(ବିଚିତ୍ର ରାମାୟଣ-୫୧।୧)

ଉପେନ୍ଦ୍ର—

ଚେତ ଚତୁରୀ ଗୃହୀଁଲ ନଗିନାଶେ
ପାଶେ ନାହିଁ ଦିବ୍ୟ ତରୁଣ,
ମାରି ହୃଦେ ହାତ ନାଥ ନାଥ ବୋଲି
ଅତି ଉଚେ କଲା କାରୁଣ୍ୟ ।
ଶୋକେ ଅଧୀରେ
ଚେତନା ହତ ସେ ବଧୂରେ !

× × ×

ପୁଣି ବୋଲଇ ହେ ମୁଁ ଜାଣି
ନଥିଲି ଦଇବ ତୁ ଏଡ଼େ ଦାରୁଣ
କ୍ଷୁଧାତୁରକୁ ସୁଧାତୁଲ୍ୟ ଭୋଜନ
ପରଶିଲୁ କେଉଁ କାରଣ
ଭୁଞ୍ଜି ବସିବା, ବେଳେ କୁଳଶ ବୃଷ୍ଟି କଲୁ । (ଲ-୧୨)

ପଦ୍ମନାଭ ଶ୍ରୀଚନ୍ଦନ—

ଚେତ ସଙ୍ଗମ ରଙ୍ଗମ ବନାଶ ସ୍ପୃହିଁ,
ଦେଖିଲ୍ ଫଳଙ୍କେ ଯୁବା ପୁରୁଷ ନାହିଁ ।
ହୃଦୟରେ କରମାର କରେ କାରୁଟ,
ବୋଲଇ ଦଇବ ତୁମ୍ଭ ଏତେ ଦାରୁଣ
କ୍ଷୁଧାର୍ତ୍ତ ଜନକୁ ପରଶିଣ ଅମୃତ
ଭୁଞ୍ଜିବା ବେଳକୁ କଲୁ ଶରାଘାତ ।
(ଶ.ରେ-୧୬ ଛାନ୍ଦ)

ଉପେନ୍ଦ୍ର—

ଏହି ସମୟରେ ସୁନ୍ଦରୀ ଘୃମରେ
ପ୍ରଭୁ ମଞ୍ଜୁଳା ଜଣାଇଲ୍,
ଅତି ମଧୁର ମଧୁ ଋତୁ ପ୍ରବେଶ
କନ୍ଦ୍ରୁଦନ ହେଲ୍ ହୋଇଲ୍ । (ଲ୍-୫ ଛାନ୍ଦ)

ପଦ୍ମନାଭ ଶ୍ରୀଚନ୍ଦନ—

ଏମନ୍ତ ବସନ୍ତ ସମୟ ନରେଖି
ପ୍ରିୟ ସଖୀ କହେ ବାଳାକୁ,
ଅତି ମଧୁର ମଧୁ ଋତୁ ପ୍ରବେଶ
ଆଣିନାହୁଁ ପର ମନକୁ । (ଶ.ରେ ୧୨ ଛାନ୍ଦ)

ଭୁବନେଶ୍ୱର କବଚନ୍ଦ୍ର ବୈଦେହୀଶ ବଳାସ ଅନୁକରଣରେ ସ କାର ନୟମରେ 'ସୀତେଶ ବଳାସ', ବ କାର ନୟମରେ 'ବାସୁଦେବ ବଳାସ', ଭଞ୍ଜଙ୍କ ଚିତ୍ରକାବ୍ୟ ବନ୍ଧୋଦୟ ଅନୁକରଣରେ ୧୪ ବନ୍ଧ ବଶିଷ୍ଟ ୧୨ ଛାନ୍ଦ ପ୍ରବନ୍ଧ ରତ୍ନାକର ଲେଖିଛନ୍ତି ।

ଯେଉଁ ରାଧାନାଥ ଚିଲିକା କାବ୍ୟରେ ଲେଖିଥିଲେ—

"ଭଗ୍ନବାନ ବେନ ବାଣୀଙ୍କ କୁମର—
କବିକୋଳିଦେବ, ଭଞ୍ଜ ବୀରବର,
କାହିଁ ସେହି, କାହିଁ ମୁହିଁ ଅକିଞ୍ଚନ ?
ଦେଖୁଥିଲି କିନା ଜାଗ୍ରତ ସ୍ୱପନ !"

ସେହି ରାଧାନାଥ ପୁଣି କହିଥିଲେ—"ପ୍ରକୃତ ସାହିତ୍ୟଜ୍ଞାନ ସମସ୍ତ ସାପେକ୍ଷ ଅଟେ । ବିଶେଷତଃ ଓଡ଼ିଶାରେ । ଓଡ଼ିଶାରେ କାଳିଦାସଙ୍କ ସହିତ ଭଞ୍ଜଙ୍କ ପରି କବି ସମାନ ଆସନ ପାଆନ୍ତି ।" ଏଣୁ ୧୮-୩-୧୮୯୫ ରେ ଇନ୍ଦ୍ରଧନୁ ଓ ବିଜୁଳି ବିବାଦ ପରେ ଲିଖିତ ଏହି ଚିଠିରୁ ରାଧାନାଥଙ୍କୁ ଭଞ୍ଜଙ୍କର ପ୍ରଶଂସକ ରୂପେ ଗ୍ରହଣ କରାଯାଇ ନପାରେ । ବିଜୁଳି ଇନ୍ଦ୍ରଧନୁରୁ ସୃଷ୍ଟ ଉତ୍ତେଜନାକୁ ସାମୟିକ ଚାପିବା ନିମନ୍ତେ ମିଥ୍ୟାର ଆଶ୍ରୟ ନେଇ ରାଧାନାଥ ହୁଏତ ଲେଖି ପାରିଥାନ୍ତି । "ମୋହଠାରୁ ଭଞ୍ଜଙ୍କର ଅଧିକ ଅନୁକାରୀ ପଦ୍ୟ ଲେଖକ ଓଡ଼ିଶାରେ ବୋଧହୁଏ ଅଳ୍ପ ବାହାରିବେ ।" ତଥାପି ରାଧାନାଥ ଭଞ୍ଜଙ୍କର ଭାଷା, ଭାବ, ବିଷୟ ବିନ୍ୟାସ ଦ୍ୱାରା କମ ପ୍ରଭାବିତ ନୁହନ୍ତି । ତାଙ୍କର ନାୟିକାମାନଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା କ୍ଳିଷ୍ଟ ନହେଲେ ହେଁ ଭଞ୍ଜୀୟ ପ୍ରଭାବରେ ପ୍ରଭାବିତ । ତାଙ୍କର ଉପମା-ବିବର୍ଣ୍ଣିନୀ, ତରଳ-ତାରକା-ହାରମୟୀ, ନାକ-ନାଗରୀ-ଟୀକା, ଲୀଳା-ଅରବିନ୍ଦ ଧାରିଣୀ, ଅମଳ-କମଳାନନା, ପ୍ରଭୃତି ଏହାର ଉଦାହରଣ । ନିମ୍ନଲିଖିତ ଉଦାହରଣରୁ ରାଧାନାଥଙ୍କ ଉପରେ ଭଞ୍ଜୀୟ ପ୍ରଭାବ ସ୍ପଷ୍ଟରୂପେ ବିଦିତ ହୁଏ ।

ଉପେନ୍ଦ୍ର—

ଦାରୁ ଭେଦକ ଭ୍ରମର ପଦ୍ମଫୁଲେ ଶୋଇ,
ବେଳୁଁ ବେଳ ରସଭେଦ ଉପଯୋଗ ପାଇ (ଲା ୩୩)

ରାଧାନାଥ:—

ଦାରୁଭେଦ କ୍ଷମ ଭ୍ରମର ପଶି କମଳ-କୋଳେ
ପାଶୋରେ ଆପଣା ବିକ୍ରମ ପ୍ରେମ-ମୋହନ ଭୋଳେ
(ଚନ୍ଦ୍ରଭାଗା)

ଉପେନ୍ଦ୍ର:—

ବାଲକ ଏ ଭେକ ଟେଳକ ପନ୍ତ୍ର,
ବିଲୋଚନେ ନୁହେଁ ମେଚକ କାନ୍ତ ? (ବୈ-୭ଷ୍ଟ)

ରାଧାନାଥ:—

ବୋଲଙ୍ଗ-ଝାଟକ-କୁଞ୍ଜେ-
ପୁଞ୍ଜେ ଯାର ମେଚକ କାନ୍ତ (ଉଷା)

ଉପେନ୍ଦ୍ର:—

ଆମ୍ଭ ସକମା ଯେ ସୁନ୍ଦରୀ ସାର,
ନାହିଁ ନଥିଲା ନୋହିବ ସଂସାର
ପୁଣି ତ ଶୋଭା ବୟସ ଯେ
ଆମ୍ଭ ଲୋଚନକୁ କବି ବଚନକୁ
ପବିତ୍ର କରିବା ଆଶେ ଯେ । (ଲ-୪ର୍ଥ)

ରାଧାନାଥ:—

ରଚିଥିଲେ ବିଶ୍ୱ-ଶିଳ୍ପୀ ଏ ଶୋଭାଙ୍ଗୀ
କେତେ କାଳ ଏହା ଲାଗି
ବିଶ୍ୱ ଲୋଚନକୁ କବି ବଚନକୁ
ପବିତ୍ର କରିବା ଲାଗି (ଯଯାତି କେଶରୀ-୧ମ ସର୍ଗ)

ଉପେନ୍ଦ୍ର:—

କି ବୋଲି ବୋଲିବ ମଶାରି ମଶକ
ପଦ୍ମେ ଭ୍ରମୁଛି ମନରେ, (ଲ-୧୯ ଛାନ୍ଦ)

ପୁଣି—

ମନ ମୋହର ଭ୍ରମୁଛି ନିରତେ
ମଶା ମଶାରିରେ ପଡ଼ି ଯେମନ୍ତେ (ଲ-୪୨)

ରାଧାନାଥ:—

ଆରେ ଭ୍ରମୁଅଛୁ ଏଣେ ତେଣେ ମନ
ମଶାରି ଭିତରେ ମଶକ ଯେସନ (ନନ୍ଦିକେଶ୍ୱରୀ)

ଉପେନ୍ଦ୍ର:—

ବାସ ଲୋଭେ ହୋଇ ଭୃଙ୍ଗମଣ୍ଡଳୀ
ବୁଲେ ଚନ୍ଦ୍ର ନିବରେ ଧୋଷା ଶାଳୀ

ରାଧାନାଥ:—

ଗନ୍ଧାମୋଦେ ଅନ୍ଧ ହୋଇ ଅଳିକୁଳ
ଗୁଞ୍ଜରି ବାମାକୁ କରନ୍ତି ଆକୁଳ । (ଚିଲିକା)

ରାଧାନାଥ ଯୁଗର କବି ଗଙ୍ଗାଧର ଉପେନ୍ଦ୍ରଙ୍କ ପ୍ରଭାବରୁ ବି ମୁକ୍ତ ନୁହଁନ୍ତି । ତାଙ୍କର ପ୍ରଣୟ ବଲ୍ଲରୀ, କୀଚକ ବଧ, ତପସ୍ୱିନୀ ଓ ଇନ୍ଦୁମତୀରେ ଭଞ୍ଜଙ୍କର ପ୍ରଭାବ ପଡ଼ିଥିବାର ସହଜରେ ଅନୁମିତ ହୁଏ ।

ଉପେନ୍ଦ୍ର:—

ବସୁଧା କମ୍ପିତ ଚକିତ ଦେବତା କି ହେଲା କି ହେଲା ।
ବଚନେ ଶୋଚନେ ଅଶ୍ରୁବିମୋଚନେ ଆକାଶ ପୂରିଲା ।

ଉପେନ୍ଦ୍ର:—"ପୁଣି ବିରହ ଅନଳେ ଦହନ
ହୋନ୍ତା ଏ ମୋର ତନୁ ବହନ,
ଭସ୍ମ ଉଡ଼ାଇ କୃପାରେ ପବନ
ନେଇ ପକାନ୍ତା କାନ୍ତା ସନ୍ନିଧାନ" ।

ଗଙ୍ଗାଧର:—

ମୋ ତନୁ ଦଗ୍‌ଧ ହେଲେ ହେବତ ଖାର,
ତାହାକୁ କରିବ ପାଦପେ ସାର
ସେ ତରୁ କାଷ୍ଠ ଦେଇ ବର୍ଦ୍ଧିକା ହସ୍ତେ
କରାଇ ଦେବ ପ୍ରଭୁ ପାଦୁକା ମୋତେ ହେ ।" (ତପସ୍ୱିନୀ)

ଉପେନ୍ଦ୍ର:—

କାମୀ ହୃଦ ଖାଣ୍ଡବ ଦହନେ ଏ ପାଣ୍ଡବ
କଲଣି ଶିଖା ପ୍ରକାଶି ଆରମ୍ଭ ତାଣ୍ଡବ । (ଲ-୨୧)

ଗଙ୍ଗାଧର ମେହେର:—

ପାଞ୍ଚଜଣ ମିଶି ଆମୋଦେ ଆରମ୍ଭିଲେ ତାଣ୍ଡବ,
ତାଣ୍ଡବ ନୁହେଁ ତା ସରସ ଫଳପୂର୍ଣ୍ଣ ଖାଣ୍ଡବ ।
(କୀଚକ ବଧ-୨ୟ ସର୍ଗ)

ଉପେନ୍ଦ୍ର:—

ଶ୍ୱାସ ତେଜ ମଳିବ ପରଶଂସାରେ ।
ଭାଗ୍ୟବନ୍ତ ନାହିଁ ମୋ ପର ସଂସାରେ (ପ୍ରେ-୯)

ଗଙ୍ଗାଧର:—

ଭାଗ୍ୟବନ୍ତୀ ମୋତେ ସଂସାରେ
ବୋଲିବେ ତୋ ଯୋଗୁ ଏକା ପରଶଂସାରେ,
(ତପସ୍ୱିନୀ –୪ର୍ଥ ସର୍ଗ)

ଉପେନ୍ଦ୍ର:—

ହେଲା ନଶୀ ନାଶ ଗଲା ଦଶି ଦଶ କ ପ୍ରାଚୀ ନାଗଶ୍ୱର
ମାଳଶାଢ଼ୀ ଗୁଡ଼ ଅରୁଣ ସରାଗେ ପିନ୍ଧିଲା ଲୋହିତାମ୍ବର,
କ ଫୁଲ । କଞ୍ଜୁ ଉଡ଼ିଯିବା ଇଚ୍ଛୁ ଅଳ ।
ସେହ୍ୱ ପଦ୍ମିନୀ ସୁରସଶାଳୀ । କାନ୍ତ ଉରକୁ ଡୋଳା ଢ଼ାଳ ।"

ଦ୍ୱାରା ଗଙ୍ଗାଧର ପ୍ରଭାବିତ ହୋଇ ତପସ୍ୱିନୀର ୪ର୍ଥ ସର୍ଗ "ମଙ୍ଗଳେ ଅଇଲା ଉଷା", କୀଚକ ବଧର ୮ମ ସର୍ଗ "ଅଇଲା ଉଷା ଯେପିତି" ପ୍ରଭୃତି ବଲ୍ଲଭର ୭ମ ସର୍ଗର "ଶିଶିର ସଦନେ ଜନ୍ମିଲେ ନନ୍ଦନ", ଦ୍ୱିତୀୟ ସର୍ଗର "ସାରିକା ବଦନେ ହୁଳହୁଳି ଦେଲେ ସହର୍ଷେ ପ୍ରକୃତି ରାଣୀ" ଭଞ୍ଜୀୟ ଭାବ, ଭାଷା ଓ ଶୈଳୀ ଦ୍ୱାରା ପ୍ରଭାବିତ । ଭଞ୍ଜଙ୍କର—

"ଭୃଙ୍ଗ ଧ୍ୱନି ଛଳେ ନବ କମଳିନୀମାନେ ଦେଲେ ହୁଳହୁଳୀ" ଅଂଶଟି ମେହେରଙ୍କର ଉପର୍ଯ୍ୟୁକ୍ତ ଅଂଶଟି କପରି ପ୍ରଭାବିତ ତାହା ସ୍ପଷ୍ଟତର କରେ ।

କବି ନନ୍ଦକିଶୋରଙ୍କ ଶର୍ମିଷ୍ଠାର କେତେକ ଅଂଶରେ ଭଞ୍ଜୀୟ ପ୍ରଭାବ ଦୃଷ୍ଟିଗୋଚର ହୁଏ ।

ଉପେନ୍ଦ୍ର:—

କାନ୍ତବିନା ଆଜ ରଜନୀ ସଜନୀ
କୋଟିଯୁଗ ସମ ହେଲାଟିରେ

ନନ୍ଦକିଶୋର:—

"ମୁହୂର୍ତ୍ତିକ ମଣେ କୋଟି ଯୁଗ ସମ ସରି" (ଶର୍ମିଷ୍ଠା)

ଉପେନ୍ଦ୍ର:—

ଦରଶନ କଲାବେଳେ ସେ ଶୋଭଶ୍ରେଣୀ କି,
ଯେଣିକି ମୁଁ ଚାହିଁ ଦେଉଥିବାଟି ତେଣିକି
ହୋଇଶି ଯାଉଥିବ ମୋତେ,
ନିଶି ନିଦ୍ରାବେଳେ ତ ଦେଖିବି ସେହି ମତେ, (କୋ-୧୧।୧୨)

ନନ୍ଦକିଶୋର:—

ଆକାଶ ଧରଣୀ ହ୍ରଦ ଗିରି ବନ
ସ୍ରୋତସ୍ୱିନୀ ଉପବନ

ସବେ ହୋଇଗଲେ                    ଦେବଯାନୀମୟ
ଆନ ନ ଦିଶେ ନୟନ    (ଶର୍ମିଷ୍ଠା)

ଏହିପରି ଭାବରେ ଦେଖିବାକୁ ଗଲେ କବି ଶେଖର ଚନ୍ଦ୍ରମଣି ମହାନ୍ତି ମଧ୍ୟ ଭଞ୍ଜୀୟ ପ୍ରଭାବରୁ ମୁକ୍ତ ନୁହଁନ୍ତି:—

ଉପେନ୍ଦ୍ର ଭଞ୍ଜ:—

ଦୂରେ ଥିଲେ ପାଶେ ଅଛି ଏହା ଥିବୁ ଜାଣି
କେତେ ଦୂରେ ଶୁନ୍ଦ କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର

ଚନ୍ଦ୍ରମଣି:—

ଦେଖ କମଳିନୀ ପ୍ରଭାକର ପୁଣି କୁମୁଦିନୀ ଶଶଧର
ଯେତେଦୂରେ ଥିଲେ ହେଲେ ହେଁ ସର୍ବଦା
ଅଭେଦ ପ୍ରୀତି ତାଙ୍କର

ରାଧାନାଥ ଯୁଗର ଅନ୍ୟାନ୍ୟ କବି ପଦ୍ମଚରଣ ପଟ୍ଟନାୟକ, ଲକ୍ଷ୍ମୀକାନ୍ତ ମହାପାତ୍ର ଓ ପଣ୍ଡିତ ନୀଳକଣ୍ଠ ମଧ୍ୟ ଭଞ୍ଜୀୟ ପ୍ରଭାବକୁ ସ୍ୱୀକାର କରିଚନ୍ତି । 'ଜୀବନକୁ ଉପଭୋଗ କରିବାର ଯେ ମଧୁର ଅଭୀପ୍ସା ଭଞ୍ଜୀୟ ସାହିତ୍ୟକୁ ପ୍ରାଣପ୍ରାଚୁର୍ଯ୍ୟ ଦେଇଥିଲା, ତାହା ସବୁଜ ଯୁଗରେ ପୁନର୍ବାର ଦେଖା ଦେଇଥିଲା । ମାୟାଧର ମାନସିଂହଙ୍କ ପ୍ରେମବର୍ଣ୍ଣନା ଭଞ୍ଜୀୟ ପ୍ରଭାବ ଶୂନ୍ୟ ନୁହେଁ ।

ମାୟାଧର ମାନସିଂହ:—

"ପ୍ରଦୀପ ଜଳୁଛି କମ୍ପି ଲଭିଅ ତାହାରେ
ତବ ରୂପ ଶିଖା ଜଳୁ ଘନ ଅନ୍ଧକାରେ ।
×          ×          ×
×     ×     ×   ହୁଅ ଦିଗମ୍ବରୀ
ମେଘମୁକ୍ତ ଉଷାସମ ।"

ଉପେନ୍ଦ୍ର ଭଞ୍ଜଙ୍କ ବାଲାଙ୍କୁ "ବିବସନ" କରିବା ପ୍ରସ୍ତାବରେ ଏହା ପ୍ରଭାବିତ ନୁହେଁ କି । ଆଧୁନିକ ଯୁଗରେ ଭଞ୍ଜୀୟ ପ୍ରଭାବ ଛନ୍ଦ ଓ ରାଗରାଗିଣୀ ବିଲୁପ୍ତ ହୋଇନାହିଁ । ବିଚ୍ଛନ୍ଦଚରଣ ପଟ୍ଟନାୟକ ଭଞ୍ଜୀୟ ଛନ୍ଦରେ କବିତା ରଚନା କରିଥିଲେ । ତାଙ୍କର 'କବିତା-କୁମୁଦ' ଏହାର ନମୁନା । ଗୋଲକ ପଧାନଙ୍କ 'ଇନ୍ଦୁରେଖା', 'ସତ୍ୟଭାମା' ଭଞ୍ଜୀୟ ଶୈଳୀର ଏକ ସୁନ୍ଦରତର ରୂପାୟନ । କଟକ-କଣ୍ଠା ବାଳକୃଷ୍ଣ ପାତ୍ରଙ୍କ (ବାଲପଦର) ବିଚିତ୍ର କାବ୍ୟରେ ଭଞ୍ଜଙ୍କର 'ଚିତ୍ରକାବ୍ୟ ବନ୍ଧୋଦୟ'ର ପ୍ରଭାବ ସୁସ୍ପଷ୍ଟ । ଭଞ୍ଜୀୟ ପାଣ୍ଡିତ୍ୟ ଓ ଚିତ୍ରକଳାର ବିଚିତ୍ର ଶୈଳୀରେ ଏହା ରଚିତ । ଶ୍ରୀ ବୈଦ୍ୟନାଥ ପ୍ରହରାଜଙ୍କ (ନୟାଗଡ଼) ରାଘବ ଲୀଳାମୃତ ଓ ଅନ୍ତର୍ଯ୍ୟାମୀ ପତିଙ୍କ କଲ୍ୟାଣ କଳାନିଧି ପ୍ରଭୃତି ଭଞ୍ଜୀୟ ଶୈଳୀ ଅନୁସରଣରେ ରଚିତ ।

କବି ସଚ୍ଚିରାଉତରାୟଙ୍କ ଉପରେ ମଧ୍ୟ ଭଞ୍ଜଙ୍କର ପ୍ରଭାବ ସ୍ୱୀକାର୍ଯ୍ୟ ;

ଭଞ୍ଜ:—ଶଠ ଭୃଙ୍ଗ ଉଠିଲେ ପଦ୍ମ ତେଜି ଯେ
ଗୁଡ଼ି ଏକ ସୁହାଗ ଆରେକ ଅନୁରାଗ
ଘ୍ରାଣେ କୁମୁଦ ଭଜି ଯେ (ଲ-୪୭।୨୨)

ସଚ୍ଚିରାଉତରାୟ:—
ରଙ୍ଗ ମାଣିକର ନାଲି ତନୁ ଚୁମି ଶୋଣିତ କାଢ଼ିଛୁ ଲହୁଁର
କାଶଫୁଲ ତେଣୁ ତଡ଼ିଦିଏ ତାକୁ ହଲଇ ତା ଧଳା ଚଅଁର
ନାହିଁ ନାହିଁ ବାଣୀ ଘଷିତ (ପଲ୍ଲୀ ସଞ୍ଜ)

ଅତ୍ୟାଧୁନିକ ଯୁଗରେ ମଧ୍ୟ ଭଞ୍ଜୀୟ ସଙ୍ଗୀତର ପ୍ରଭାବ "ନୂଆ ନୂଆ ହନା କେତେ ବଡ଼ ଆଦର" ଓ "କେତେଦୂର ଚନ୍ଦ୍ର କେତେଦୂରେ କୁମୁଦିନୀ"ର ପ୍ରଭାବ ଆଧୁନିକ ଯୁଗର "ନୂଆ ନୂଆ

ହନା କେତେ ବଡ଼ ଆଦର ନୂଆକୁ ପୁରୁଣା ହେଲେ ଭୁଠ ପଥର",
"ଚନ୍ଦ୍ର ଯେତେ ଦୂରେ ଥିଲେ କୁମୁଦମା ତାକୁ କି ଭୁଲେ, ସେହି
ପରି "(ବନ୍ଧୁ) ମୋତେ ମନେ ପକାଉଥିବେଟି"ରେ ପଡ଼ିଅଛି । ଏ
ସବୁ ଦୃଷ୍ଟିରୁ ବିଚାର କଲେ ପ୍ରଭାବଶାଳୀ ଭଞ୍ଜ ସାହିତ୍ୟ ଆଜି
ଅତ୍ୟାଧୁନିକ ଯୁଗରେ ମଧ୍ୟ ପ୍ରଭାବ ପକାଇଛି । ଗୋପବନ୍ଧୁଙ୍କ ବାଣୀ
ଏଣୁ ଯଥାର୍ଥ ହୋଇଛି ।

"ଗାଏ ତୁମ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା
ବଲେ ବୋଲେ-ଚଷା ଅନ୍ତଃପୁରେ ଯୋଷା
ନୃତ୍ୟ ରଙ୍ଗେ ବାରାଙ୍ଗନା ।

ଧନ୍ୟ ଭଞ୍ଜ, ଧନ୍ୟ ତୁମର ପ୍ରଭାବ । କାଳଗଡ଼ି ଚାଲିଛି; କିନ୍ତୁ
ତାହାର ଭିତରେ ରଚିତ କାବ୍ୟ କବିତାରେ ପ୍ରତ୍ୟକ୍ଷ ଓ ପରୋକ୍ଷ
ଭାବରେ ତୁମର ଅପ୍ରତିହତ ପ୍ରଭାବ ପଡ଼ିଚାଲିଛି । ଭଞ୍ଜ ! ତୁମେ
ଆଜି ଜଣକର ନୁହଁ, ଗୀତ ବୋଧ ଦୃଷ୍ଟିରୁ ଗଣକର । ତୁମେ ଆଜି
ଘୁମୁସରର ନୁହଁ, ସାରା ଓଡ଼ିଶାର । ତୁମେ ଆଜି ଏକ ବ୍ୟକ୍ତି
ବିଶେଷ ନୁହଁ, ଏକ ମହାନ୍ ଅନୁଷ୍ଠାନ ।

—:୦:—

୦

# ଭଞ୍ଜ ସାହିତ୍ୟରେ "ପ୍ରକୃତି"

"ମାୟାଂ ତୁ ପ୍ରକୃତିଂ ବିଦ୍ୟାନ୍ମାୟିନଂ ତୁ ମହେଶ୍ୱରମ୍
ତସ୍ୟାବୟବଭୂତୈସ୍ତୁ ବ୍ୟାପ୍ତଂ ସର୍ବମିଦଂ ଜଗତ୍ ।"
(ଶ୍ୱେତା ଶ୍ୱତରୋପନିଷଦ୍, ୪ର୍ଥ ଅଧ୍ୟାୟ, ୧୦ମ-ମଣ୍ଡଳ)

ଭଗବାନ ହେଉଛନ୍ତି ମାୟାବୀ ଓ ପ୍ରକୃତି ହେଉଛି ମାୟା । ଏହାର ଅବୟବଭୂତ (କାର୍ଯ୍ୟ-କାରଣ-ସଙ୍ଘାତ) ଦ୍ୱାରା ଏହା ସମ୍ପୂର୍ଣ୍ଣ ଜଗତ ବ୍ୟାପ୍ତ । ପରିଦୃଶ୍ୟମାନ ମାୟା ରୂପିଣୀ ପ୍ରକୃତି ଯୁଗେ ଯୁଗେ ଲଗାଇଦିଏ କବି, ଭାବୁକ, ରସିକ ବ୍ୟକ୍ତିର ନୟନରେ ମାୟାର ଅଞ୍ଜନ । ଫଳରେ ସେମାନେ ଦିବ୍ୟ ଶକ୍ତି ବଳରେ ଅବଲୋକନ କରନ୍ତି—ନିତ୍ୟ ନୂତନ, ଚଳଚଞ୍ଚଳ ପ୍ରକୃତିର ରୂପକୁ; ରଙ୍ଗୀନ ଭାବରେ ତାହାକୁ ଚିତ୍ରକରି ସାଇତି ରଖିଯାନ୍ତି ଯୁଗ ଯୁଗକୁ । ସେମାନଙ୍କ ନିର୍ଜୀବ ଲେଖନୀରେ ପ୍ରକୃତିକୁ ସଜୀବ କରି ତୋଳନ୍ତି । ନିଶ୍ଚେଷ୍ଟ, ନିଷ୍ପନ୍ଦ, ନିଷ୍ପ୍ରାଣ ପ୍ରକୃତିକୁ ସେମାନେ ପ୍ରାଣ ପୂର୍ଣ୍ଣ କରି ଦେଖିଥାନ୍ତି । ଉପେନ୍ଦ୍ରଙ୍କ ପରି କବି ପ୍ରକୃତିକୁ ଶୃଙ୍ଗାର ରସ ବ୍ୟଞ୍ଜକ ରୂପ ଓ ସୁନ୍ଦରୀ ଯୁବତୀଙ୍କର ବିଭିନ୍ନ ଅବୟବର ଉପମା ରୂପେ ରୂପାୟିତ କରିଅଛନ୍ତି । ଅଧ୍ୟାପକ ଶ୍ରୀ ମହାପାତ୍ର ନୀଳମଣି ସାହୁଙ୍କ ଭାଷାରେ କହିବାକୁଗଲେ "ଉପେନ୍ଦ୍ର ତାଙ୍କ ନାୟିକାମାନଙ୍କର ରୂପ ଅପେକ୍ଷା ସେମାନଙ୍କର ପରିହିତ ବିଭିନ୍ନ ମୂଲ୍ୟବାନ ଧାତୁର ଅଳଙ୍କାର ଓ କାବ୍ୟରେ ବ୍ୟବହୃତ ବିଭିନ୍ନ ଶବ୍ଦ ଓ ଅର୍ଥାଳଙ୍କାର ବର୍ଣ୍ଣନାରେ ହିଁ ମୁଖର । × × ନାରୀର ରୂପ ବର୍ଣ୍ଣନା କରିବା

ଲାଗି ଭଞ୍ଜେ ଲେଖନୀ ଧରିନାହାଁନ୍ତି । ନିଜର କାବ୍ୟଗତ ଅଳଙ୍କାରର ଚମତ୍କାରିତା ଦେଖାଇବା ଲାଗି ଓ ନିଜର ଅଳଙ୍କାରିକ ପ୍ରୟୋଗ "ଦକ୍ଷତା" ଦେଖାଇବା ଲାଗି ସେ ନାରୀର ରୂପ ବର୍ଣ୍ଣନାକୁ ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି ମାତ୍ର । ତେଣୁ ଭଞ୍ଜଙ୍କର ଅର୍ଥାଳଙ୍କାର ଓ ଶବ୍ଦାଳଙ୍କାର, ବିବିଧ ଉପମା, ତର୍କଣା ଓ ଶ୍ଳେଷ ଅନୁପ୍ରାସ ଯମକାଦି ଭିତରେ ନାୟିକାର ସ୍ୱାଭାବିକ ରୂପ ପ୍ରାୟ ଉପେକ୍ଷିତ । ତା' ଛଡ଼ା ପୁଣି ତାଙ୍କ ଲାବଣ୍ୟବତୀ ଓ ପ୍ରେମ ସୁଧାନିଧି ମାନଙ୍କରେ ସ୍ୱକୀୟ ରୂପ ଲାବଣ୍ୟ ଅପେକ୍ଷା ରହିଛି ସେମାନଙ୍କର ସ୍ୱର୍ଣ୍ଣମୁକ୍ତାଦି ଅଳଙ୍କାର ସଂଯୋଗ ଉପରେ ।" *

ମାତ୍ର ଏହା ସତ୍ୟ ଯେ, ଯୁଗ ରୁଚି ଅନୁଯାୟୀ କବି କାବ୍ୟକୁ ଅଳଙ୍କାର ସର୍ବସ୍ୱ କରି ମଧ୍ୟ ନାରୀ ରୂପ ବର୍ଣ୍ଣନାରେ ନାରୀକୁ ଅଳଙ୍କାର ମଣ୍ଡନ କରିବାକୁ ଯାଇ କହିଅଛନ୍ତି—

୧ "ତଥାପି ଭୂଷଣ ନୁହେଁ ଦୂଷଣ, ଭୁବି ଚନ୍ଦ୍ରମା ସେ ରଜନୀ ଜାଣ
ଉରସ୍ଥରେ କରେ ଶୋଭା ଅଧିକା, ସୁକୁମାରୀ ବୋଲି ନକର ଶଙ୍କା
ଏଥୁ ହେବ ଭାରି, ପୟୋଧର ତୋ ଧରାଧର ପରି ।

ଏଠାରେ କବି ଅଳଙ୍କାର ଶାସ୍ତ୍ରରେ ଧନ୍ୟା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀକୁ ଅଳଙ୍କାର ଶୂନ୍ୟା କରାଇ ନାହାନ୍ତି । କବି ତାଙ୍କୁ ଅଳକା ପୁରୀରେ ଥିବା ସୁନ୍ଦରୀମାନଙ୍କ ମଧ୍ୟରେ ଅଳଙ୍କାର, ଅଳଙ୍କାର ବୋଲି ମଧ୍ୟ କହିଛନ୍ତି । ତଥାପି ଅଳଙ୍କାର ଦୋଷାବହ ନୁହଁ, କାରଣ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଚନ୍ଦ୍ରମାର ଅଳଙ୍କାର ସବୁ ରାସୀ । ଚନ୍ଦ୍ର ଓ

---

* ରାଧାନାଥ ପରିଚିତ—ନାରୀ ରୂପ ଚିତ୍ରଣରେ ରାଧାନାଥ,
୧—କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ-୧୨ ଛାନ୍ଦ ।

ଙ୍ଗୀ ପରସ୍ପର ଶୋଭାକୁ ଅଧିକ ଘନୀଭୂତ କରିପାରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଓ ଅଳଙ୍କାର ପରସ୍ପରକୁ ଶୋଭିତ କରୁଅଛନ୍ତି ।

ପୁଣି ଉପେନ୍ଦ୍ର ଭଞ୍ଜ ନାୟୀ ରୂପ ବର୍ଣ୍ଣନାରେ ଅଳଙ୍କାରର ଅପେକ୍ଷା ନରଖି କହିଅଛନ୍ତି—

"ବରମାପୂର୍ଣ୍ଣ ବହୁମୂଲ୍ୟ ଦୁକୂଳ ବନ୍ଧୁ ଅନ୍ୟ ସ୍ତ୍ରୀ-ବର
ବର ବର୍ଣ୍ଣିମା ହରଗ୍ରା ବୋଲିଗଲି ଛୁଇଁ ଯାହା କଳେବର ।
ବରନେ ନିଉନ ହେମ ଭୂଷାମାନ ନୁହଇ କ୍ଷୀଣ ପୀବର
ବର ଚୀନ ଜଡ଼ ଅଙ୍ଗେ ବ୍ୟକ୍ତ ଧଡ଼ ଥିବାରୁ ପୀତ ଅମ୍ବର ।
ବରଟା ଗଣ୍ଡରେ ଶରଣ ପଶିଚ୍ଛି ସେ ଲାବଣ୍ୟ ସରୋବର
ବରନତମ୍ବା ବଦନ ତାମ-ରସ ବିକାଶ ସ୍ୱବି ଦିବର ।" ୧

ଏଠାରେ ବହୁମୂଲ୍ୟ ପଟ୍ଟବସ୍ତ୍ର ଯୋଗରେ ସୀତା ସୁନ୍ଦରୀ ବୋଲି ଉପେନ୍ଦ୍ରଙ୍କ ଦ୍ୱାରା ବର୍ଣ୍ଣିତା ନୁହେଁ । ପ୍ରକୃତରେ ବସନ ଭୂଷଣରେ ଅଳଂକୃତା ହୋଇଥିବା ବେଳରେ ସୁନ୍ଦରୀ ଶିରୋମଣି ରୂପେ ସେ ପରିଗଣିତା, ଯାହାର ଦେହ ସ୍ପର୍ଶରେ ହଳଦୀ "ବର-ବର୍ଣ୍ଣିମା" ଶ୍ରେଷ୍ଠ ବର୍ଣ୍ଣ ଧାରଣୀ ବୋଲି ପରିଚିତା ହେଲା, ତା'ର ସ୍ୱୟଂ ପ୍ରକାଶମାନ ସୌନ୍ଦର୍ଯ୍ୟ କଣ ବା କୁହାଯାଇପାରେ ?

କେହି କେହି କହନ୍ତି "ଭଞ୍ଜଙ୍କ ଲେଖାରେ ପ୍ରକୃତ ବର୍ଣ୍ଣନା ନାହିଁ । ଭଞ୍ଜଙ୍କ ସାହିତ୍ୟରେ ବର୍ଣ୍ଣନା ବୈଚିତ୍ର୍ୟ ନାହିଁ । କେବଳ ଏକଦେଶଦର୍ଶୀ ବର୍ଣ୍ଣନା ।" ୨ । ମାତ୍ର ଉପେନ୍ଦ୍ରଙ୍କର ପ୍ରକୃତ ବର୍ଣ୍ଣନାରୁ ଜଣାଯାଏ ଯେ ତାଙ୍କର ବର୍ଣ୍ଣନା ଶକ୍ତି କେଉଁପରି ମନୋଜ୍ଞ,

(୧) ବୈଦେହୀଶ ବିଳାସ—୩୦ ଛାନ୍ଦ
(୨) ବିଜୟ ଚନ୍ଦ୍ର ମଜୁମ ଦାର—ପ୍ରାଚୀନ ଉତ୍କଳ ।

ସେହିପରି ବହୁମୁଖୀଥିଲ । ଯେଉଁମାନେ ଉପେନ୍ଦ୍ର କାବ୍ୟରେ ଉତ୍ତମ ଭାବରେ ପ୍ରବେଶ କରିନାହାନ୍ତି, ସେମାନେ ଭାବନ୍ତି ଯେ କେବଳ ଗଙ୍ଗାଧର ହିଁ ଜୀବନ୍ତ ପ୍ରକୃତିର ଚିତ୍ରଣ କରିଛନ୍ତି, ମାତ୍ର ଉପେନ୍ଦ୍ର ନୁହନ୍ତି । କେତେକ ଦୃଷ୍ଟାନ୍ତରୁ ଏହା ସ୍ପଷ୍ଟ ହେବ ଯେ, ଉପେନ୍ଦ୍ର ମଧ୍ୟ ଜୀବନ୍ତ ପ୍ରକୃତିର ରଙ୍ଗୀନଚିତ୍ର ପ୍ରତିପାଳନ କରି-ଅଛନ୍ତି ।

"ବିଭୂତି ସହିତେ ଅତିରଞ୍ଜନ, ବାୟୁ ସଖାରେ ହୁଅଇ ପୂଜନ
ବାଜଇ ସୀତାର ନୂପୁର ଧ୍ୱନି, ବନେ ମୃଗ ବର୍ଗ ପାଶେ ପ୍ରକଟି
ବିଗତ, ଭୟୁଦେଖି ସ୍ତିମିତ, ବର୍ଦ୍ଧକୀ ଇନ୍ଧନେ ଗଢିଲ ବତି ।" ୧

ସୀତାଙ୍କର ଦିବ୍ୟ କାନ୍ତି ନିରୀକ୍ଷଣ କରି ଅଗ୍ନି ଦେବତା ତାଙ୍କର ପୂଜା କରୁଅଛନ୍ତି । ତାଙ୍କ ନୂପୁର ଶବ୍ଦ ଶୁଣି ମୃଗମାନେ ମଧ୍ୟ ବିମୁଗ୍ଧ ହୋଇ ତାଙ୍କ ସମୀପରେ ନିର୍ଭୀକ ଚିତ୍ତରେ ବର୍ଦ୍ଧକୀ ନିର୍ମିତ କାଷ୍ଠ-ପୁତଳୀ ପରି ଠିଆ ହୋଇଅଛନ୍ତି । ଏଠାରେ ଭଞ୍ଜ କଣ ପ୍ରକୃତିକୁ ଜୀବନ୍ତ ଭାବରେ ଚିତ୍ରଣ କରି ନାହାଁନ୍ତି ? ପୁଣି ଯେତେବେଳେ ଆମେ ପଢୁ—

"ବ୍ୟକ୍ତ ହିଁଶୁ ପୁଣି ବଳେଧରି ଆଣି ଆଣନ୍ତେ ଅଙ୍ଗଣ
ବାତ ସରିତ ସ୍ତମ୍ଭିତ ତରୁଲତ ହୋଇଲା ପାଷାଣ
ବସୁଧା କମ୍ପିତା ଚକିତ ଦେବତା କି ହେଲା କି ହେଲା
ବଚନେ ଶୋଚନେ ଅଶ୍ରୁ ବିମୋଚନେ ଆକାଶ ପୂରିଲା
ବରଷିଲା ଝୋପା ଝୋପା ନୀର କମ୍ପା ନଥାଇ ମୁଦିରେ ।
ବିହଙ୍ଗେ ଉଗ୍ରୁକେ ଭାବନ୍ତ ଗୃହକେ ବାରିଲେ ପାନରେ ।" ୨

---

(୧) ବୈଦେହୀଶ ବିଳାସ—୨୧ ଛାନ୍ଦ
(୨) ବୈଦେହୀଶ ବିଳାସ—୨୪ ଛାନ୍ଦ

ସୀତା ବ୍ୟକ୍ତ ହୋଇ ବସିବାରୁ ରାବଣ ତାହାଙ୍କୁ ବଳତ୍କାରରେ ଧରି ଅଗଣାକୁ ଆଣିଲା । ଏ ଘଟଣା ଦେଖି ପବନ ଓ ନଦୀ ସ୍ତବ୍ଧ ହୋଇଗଲେ ଏବଂ ପାଷାଣ ମଧ୍ୟ ତରଳ ଗଲା । ଆହୁରି ମଧ୍ୟ ପୃଥିବୀ କମ୍ପମାନ ହେଲା । ଦେବତାମାନେ ଚମତ୍କୃତ ହେଲେ । "କି ହେଲା କି ହେଲା" ଏହି ଶୋକ ଓ ବିସ୍ମୟଜନକ ଶବ୍ଦରେ ଆକାଶ ପୂର୍ଣ୍ଣ ହେଲା । ଲୋତକପାତ କରିବାରୁ ବନାମେଘରେ ବିନ୍ଦୁ ବିନ୍ଦୁ ଜଳ ବର୍ଷିଲା, ପକ୍ଷୀମାନେ ଉଚ୍ଚସ୍ୱରରେ ରାବକଲେ । ଗୃହକଗଣ ସେହି ଜଳବିନ୍ଦୁ ପାନକରି ଜାଣି ପାରିଲେ ଯେ ତାହା ବୃଷ୍ଟି ଜଳ ନୁହଁ । ଉପେନ୍ଦ୍ରଙ୍କର ଏହି ବର୍ଣ୍ଣନା ଅତି ଜୀବନ୍ତ ହୋଇପାରିଛି । ଏଠାରେ ପ୍ରକୃତି ମୂର୍ତ୍ତିମତୀ, ସୀତାଙ୍କ ଦୁଃଖରେ ଜର୍ଜରିତା, ମୌନ ପ୍ରକୃତି ପ୍ରାଣରେ ଏକ ଅବ୍ୟକ୍ତ ବେଦନା ପ୍ରକାଶ ଆଶାରେ ଚଞ୍ଚଳ ହୋଇ ଉଠିଛି ।

ଉପେନ୍ଦ୍ରଭଞ୍ଜ ବୈଦେହୀଶ ବିଳାସରେ ପ୍ରକୃତିକୁ ଯେଉଁଭଳି ଭାବେ ଜୀବନ୍ତ କରି ତୋଳିଛନ୍ତି, ଲାବଣ୍ୟବତୀରେ ମଧ୍ୟ ତାହା ପରିଦୃଷ୍ଟ ହୋଇଥାଏ । ଦୃଷ୍ଟାନ୍ତ ସ୍ୱରୂପ—

"କଉଁ ଲତାରୁ କୁସୁମ ଖସିବାରୁ, ଏମନ୍ତ ହେଉଛି ପରତେ
ଧନ୍ୟ ଧନ୍ୟ ବୋଲି ପ୍ରଶଂସା କରି କି ରହି ବର୍ଷୁଛନ୍ତି ନିରତେ
ପରାଗ, ଛଳେ ସିଞ୍ଚୁଛନ୍ତି କର୍ପୂର,
ପଲ୍ଲବ ଛଳେ ପଣତେ ବିଞ୍ଚୁଛନ୍ତି ଉପକାର କୃତେ ତାଙ୍କର ।
କଉଁ କଉଁ ତରୁ ତରୁଣୀମାନଙ୍କୁ ପକ୍ଷୀ ନିନାଦରେ କହନ୍ତି
ଏପରି ଉତ୍ସବ କେବେ ନୋହିଥିଲା ଦେଖିନଥିବେ ସୁରପତି
କେତରୁ,—ଶାଖା ଲୋଟନ୍ତି ଫଳ ଭରେ,
କି ପରିରମ୍ଭ ଆରମ୍ଭ କରିଛନ୍ତି ରମ୍ଭୋରୁ ପାଦଲାଗି ଶିରେ ।" ୧

୧—ଲାବଣ୍ୟବତୀ–୨ମ ଛାନ୍ଦ

ଏଠାରେ ବାସନ୍ତୀ ପ୍ରକୃତି ଯେପରି ଲାବଣ୍ୟବତୀ ସଖୀ ସମେତ ବସନ୍ତ ଉତ୍ସବ ପାଳନରେ ଉନ୍ମତ୍ତ । କୌଣସି କୌଣସି ଲତାରୁ ଫୁଲଟିଏ ପଡ଼ିବାରୁ ମନେ ହେଉଛି ସତେ ଯେପରି ପ୍ରକୃତି ଫୁଲ ଛଳରେ ରତ୍ନ ରେଣୁ, ଏବଂ ପରାଗ ଛଳରେ କର୍ପୂର ସିଞ୍ଚୁଛନ୍ତି କି ? ଆମ୍ରର ମଧ୍ୟ ପଲ୍ଲବଛଳରେ ପରିଶ୍ରାନ୍ତ କାନନରେ ତାଙ୍କର ଉପକାର କରିବା ପାଇଁ ବାଞ୍ଛୁଛନ୍ତି କି ? କୌଣସି କୌଣସି ବୃକ୍ଷ ପକ୍ଷୀର କଳକୂଜନରେ ସେହି ତରୁଣୀମାନଙ୍କୁ କହୁଛନ୍ତି ଯେ, ଏପରି ଉତ୍ସବ କେବେ ହୋଇନଥିଲା । ଦେବରାଜ ଇନ୍ଦ୍ର ମଧ୍ୟ ଏପରି ଶୋଭା ଦେଖିନଥିବେ । ଫଳ ଭାରରେ ଅବନତ ଶାଖା ଗୁଡ଼ିକ ତଳେ ଲୋଟିବାରୁ ମନେ ହେଉଛି ସତେ ଯେପରି ସେମାନେ ସୁନ୍ଦରୀ ତରୁଣୀମାନଙ୍କ ପାଦକୁ ମୁଣ୍ଡରେ ଲଗାଇ ପରସ୍ପରକୁ ଆଲିଙ୍ଗନ କରୁଛନ୍ତି ।

ଏହି ବାହ୍ୟ ପ୍ରକୃତି ଚିତ୍ରଣରେ ଉପେନ୍ଦ୍ର ଭଞ୍ଜ ଯେତିକି ପାର-ଦର୍ଶିତା ଲାଭ କରି ପାରିଛନ୍ତି, ଏହାର ଅନ୍ୟ ଏକ ବିଭାଗ ସନ୍ଧ୍ୟା ଓ ପ୍ରଭାତ ବର୍ଣ୍ଣନାରେ ମଧ୍ୟ ସେ ସେତିକି ଦକ୍ଷତା ହାସଲ କରିପାରିଛନ୍ତି । କହିବାକୁ ଗଲେ ଏହି ସନ୍ଧ୍ୟା ଓ ପ୍ରଭାତ ବର୍ଣ୍ଣନା ଉପେନ୍ଦ୍ର ଭଞ୍ଜଙ୍କ ସୃଷ୍ଟିରେ ଯେପରି ଜୀବନ୍ତ ତାହା ଅନ୍ୟ କୌଣସି ରୀତିଯୁଗୀୟ ଓଡ଼ିଆ କବିଙ୍କ କୃତିରେ ସମ୍ଭବପର ହୋଇପାରି ନାହିଁ । ଏହାର ଏକ ମାର୍ମିକ ଅବବୋଧ ନିମିତ୍ତ ବୈଦେହୀଶ ବିଳାସ ଷଷ୍ଠ ଛାନ୍ଦର ସନ୍ଧ୍ୟା ବର୍ଣ୍ଣନା ଯଥେଷ୍ଟ । ଯେତେବେଳେ ଦିବସର ଉଦଗ୍ର ତେଜଣା ଛାଡ଼ିପଡ଼ୁଛି ଏବଂ କ୍ରମଶଃ ସନ୍ଧ୍ୟା ନଇଁ ନଇଁ ଆସିଛି ସେତିକିବେଳେ କବି ଉପେନ୍ଦ୍ର କହୁଛନ୍ତି—

"ବୋଲଇ ତାମସୀ ଯେ କାହାର
ବଢ଼ାଇଦେଇ ସନ୍ଧ୍ୟା ଛଳେ କର

ବାରୁଣୀ କୁଣ୍ଡେ ବୁଡ଼ାଇ ଇନକୁ
ବିନାଶ କରିବା ଇଚ୍ଛା ଦିନକୁ
ବାଳଧରି କବା ନେଇ ଆକର୍ଷି
ବାୟୁସରସୁ ଯିବା ତଥା ଦର୍ଶି
ବୋବିଦେଲା ପକ୍ଷୀ ନାଦ ଛଳର
ବଦନେ କାଳି ପଡ଼ିଲା ଦିଗର ।" ୧

ଏଥିରୁ ସୂଚିତ ହୁଏ ଯେ ସନ୍ଧ୍ୟା ଛଳରେ ଦିବସର ବିନାଶ ସାଧନ ନିମିତ୍ତ ରାତ୍ରି ହସ୍ତ ପ୍ରସାରଣ କରିଛି । ପରମୁହୂର୍ତ୍ତରେ ସୂର୍ଯ୍ୟଦେବ ବାରୁଣୀ ରୂପକ କୁଣ୍ଡରେ ବୁଡ଼ିଯାଇଛନ୍ତି ଏବଂ ଦିବସ ଦୁଃଖାଭିଭୂତ ହୋଇଉଠିଛି । ତତ୍ ସଙ୍ଗେ ସଙ୍ଗେ ନୀଡ଼ାଭିମୁଖୀ କାକମାନେ ଯେଉଁ ରବ ଦିଅନ୍ତି, ତାହା ଦିନପତିଙ୍କର ବିନାଶରେ ଆକୁଳ କ୍ରନ୍ଦନ ବୋଲି କବି ଅତି ଜୀବନ୍ତ ଭାବେ ବର୍ଣ୍ଣନା କରିଛନ୍ତି । ଏହିଭଳିଭାବେ ଉପେନ୍ଦ୍ରଙ୍କ ସମଗ୍ର କାବ୍ୟକୁ ବିଚାରକଲେ ସେଥିରେ ବହିଃ ପ୍ରକୃତିର ଭୂରି ଭୂରି ବର୍ଣ୍ଣନା ଦେଖିବାକୁ ମିଳେ ।

ଉପେନ୍ଦ୍ର ବହୁମୁଖୀ ପ୍ରତିଭାର ଦାୟାଦ, କାରଣ ସେ ଯେଉଁ ଭଳି ଭାବେ ବହିଃ ପ୍ରକୃତିର ଜୀବନ୍ତ ଚିତ୍ରଣ ସ୍ଥାନେ ସ୍ଥାନେ ଦେଇଛନ୍ତି, ଠିକ୍ ସେହିଭଳି ସେ କାବ୍ୟ ମଧ୍ୟରେ ଅନେକ ସ୍ଥାନରେ ଅନ୍ତଃ ପ୍ରକୃତିକୁ ଚିତ୍ରଣ କରିପାରିଛନ୍ତି । ବୈଦେହୀଶ ବିଳାସ ଓ ସୁଭଦ୍ରା-ପରିଣୟ କାବ୍ୟରେ ପୌରାଣିକ ସତ୍ୟତାକୁ ଅକ୍ଷୁର୍ଣ୍ଣ ରଖିବାକୁ ପଡ଼ିଥିବାରୁ ସେ ପର୍ଯ୍ୟାପ୍ତ—କ୍ଷେତ୍ର ମୌଳିକତା ଖେଳାଇବାର ପାଇ ନାହାନ୍ତି, ତଥାପି କେତୋଟି ଚରିତ୍ର ମାଧ୍ୟମରେ ସେ ନିଜର

୧ — ବୈଦେହୀଶ ବିଳାସ—୬ଷ୍ଠ ଛାନ୍ଦ

ଦୃଷ୍ଟିକୋଣରେ ନୂତନତ୍ୱ ଫୁଟାଇବାରେ ପଶ୍ଚାତ୍‌ପଦ ହୋଇନାହାନ୍ତି ।
ଏହି ପରିପ୍ରେକ୍ଷୀରେ ଉପେନ୍ଦ୍ର କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ କହିଛନ୍ତି—

"ହେ କୁମୁଦ ବିକାଶ ଭୁଟି ଭୁଟି ଯାଇ ପଦ୍ମ ଫୁଟି ଫୁଟି ଆସେ,
ହରଷ, ବିରସ ପାଲଟା ପାଲଟି ମଧୁଲିଟ ବିଟ କି ସେ ?" ୧

ଏଠାରେ କବି ପ୍ରକୃତି ମାଧ୍ୟମରେ ମନୁଷ୍ୟର ଅନ୍ତର୍ନିହିତ ଆନନ୍ଦ ବିଷାଦ ଆଦି ଗୁଣକୁ ଅତି ସୁନ୍ଦର ଭାବରେ ଉତ୍ପ୍ରେକ୍ଷା ଅଳଙ୍କାର ମାଧ୍ୟମରେ ପ୍ରକାଶ କରିଅଛନ୍ତି ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀଙ୍କୁ ଯେତେବେଳେ ମଧୁଶଯ୍ୟାପୁରକୁ ଦାସୀମାନେ ସଜ୍ଜିତା କରି ନେଉଅଛନ୍ତି, ସେତେବେଳେ ଲଜ୍ଜା ଓ ଅନୁରାଗ ମଧ୍ୟରେ ବିବାଦ ଉପୁଜିଛି । ଅନୁରାଗ ଯେତେ ତାଙ୍କୁ ଆଗେଇଯିବାକୁ ଉତ୍କଣ୍ଠିତା କରୁଥାଏ, ଲଜ୍ଜା ସେହି ପଦକ୍ଷେପକୁ ସଖୀମାନେ ଥିବାରୁ ମନ୍ଥର କରି ବାଧା ସୃଷ୍ଟି କରୁଥାଏ । ଉପେନ୍ଦ୍ରଙ୍କ ଭାଷାରେ କହିବାକୁ ଗଲେ—

"ଲଜ୍ଜା ଅନୁରାଗର ଉପୁଜି ଗଲା ବାଦ
ନବଳି ବଳି, ନଚଳି ଚଳି ମନ ପାଦ ଯେ ।" ୨

ଯେଉଁମାନେ କହନ୍ତି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଏତେକ୍ଲିଷ୍ଟ କାବ୍ୟ ଯେ, ତହିଁରେ କେଉଁ ପଦରେ ଦାନ୍ତ ଭୁଷିବ ନାହିଁ । ଏହି ପଂକ୍ତି ଭାଷାର ସରଳତା ଓ ଭାବର ତରଳତା ସେମାନଙ୍କର ଏପରି ଧାରଣା ଦୂର କରିବ ନାହିଁ କି ?

---

୧—କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ—୨୯ ଛାନ୍ଦ
୨—କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ—୩୪ ଛାନ୍ଦ

ବୈଦେହୀଶ ବିଳାସର ଉପନାୟିକା ସୂର୍ପଣଖାର ସୂକ୍ଷ୍ମ ମାନସିକ ବିଶ୍ଳେଷଣ କରି ମନସ୍ତାତ୍ତ୍ୱିକ ଭାବରେ କବି ବର୍ଣ୍ଣନା କରିଅଛନ୍ତି । ସୂର୍ପଣଖା ଭାବନ୍ତି "ଭ୍ରମର ମ୍ଳାନଲକ୍ଷ୍ମୀ ଫୁଲରେ ସ୍ନେହୀ ହେଲେ ବି ବାସଙ୍କ ପ୍ରେମରେ ସବାଗ ସ୍ଥାପନ କଲାପରି, ରାମଚନ୍ଦ୍ର ସୀତାଙ୍କୁ ଛାଡ଼ି ତା'ର ପଛରେ ଗୋଡ଼ାଇବେ ।" ଏହା ଭାବି ସେ ସୁନ୍ଦର ରୂପ ଧାରଣପୂର୍ବକ ନିଜରୂପରେ ଆତ୍ମପ୍ରସାଦ ଲାଭ କରି ରାମଚନ୍ଦ୍ରଙ୍କୁ ସ୍ୱୀୟ ପ୍ରେମ ପାଶରେ ବାନ୍ଧିବାକୁ ଚେଷ୍ଟା କରିଛି । ରାମଚନ୍ଦ୍ର ଏକ-ପତ୍ନୀବ୍ରତ ଆଚରଣ କରିଥିବା କହି ସ୍ୱୀୟ ଅନୁରୋଧରୁ କ୍ଷାନ୍ତ ହେବାକୁ କହିଥିଲେ ମଧ୍ୟ ସେ ପ୍ରେମଭିକ୍ଷାରୁ ବିରତା ହୋଇନଥିଲା । ଏଣୁ ରାମଚନ୍ଦ୍ର ନିଜର ପ୍ରେମର ପରାକାଷ୍ଠା ପ୍ରଦର୍ଶନପୂର୍ବକ ଲକ୍ଷ୍ମଣଙ୍କ ନିକଟକୁ ଶ୍ଳେଷାର୍ଥକ ଏକ ପତ୍ର ଲେଖିଥିଲେ । କିନ୍ତୁ ଯେଉଁ ବ୍ୟକ୍ତି କାମାନ୍ଧ ହୋଇଥାଏ, ତା'ର ବୋଧଶକ୍ତି ଦୂର ହୋଇଥାଏ । ସେହିପରି ସୂର୍ପଣଖାର ମନୋଭାବକୁ ପ୍ରକାଶ କରିବାକୁ ଯାଇ ଲେଖିଛନ୍ତି—

"ବୋଧମତୀ କାମାନ୍ଧେ ନ ବୁଝି ହସିଲା
ବାହୁଡ଼ାଇବେ ନାହିଁ ଯେ ଆଜ ଘୋଷିଲା ।" ୧

ଲକ୍ଷ୍ମଣ ଯେତେବେଳେ ପ୍ରକୃତ ଅର୍ଥ ବୁଝି ପାରିଲେ, ସେତେବେଳେ ସୂର୍ପଣଖାର ମନୋଭାବ ଅତି ସ୍ପଷ୍ଟ ହୋଇଛି । ଅନ୍ତର୍ନିହିତ ପ୍ରକୃତିର ଅନବଦ୍ୟ ଅଥଚ ସୁନ୍ଦର ସ୍ୱଭାବକ ଚିତ୍ର ଦେବାକୁ ଯାଇ ଉପେନ୍ଦ୍ର ଲେଖିଛନ୍ତି—

"ବାହୁ ଟେକି ଉଠୁଁ ତର୍କି କାର୍ଯ୍ୟ ସଫଳ,
ବାହ୍ୟରତି ଏହିକ୍ଷଣି କରିବେ କୋଳ ।

---

୧—ବୈଦେହୀଶ ବିଳାସ—୨୩ ଛାନ୍ଦ

ବାଳଧରୁଁ ବସ୍ତ୍ରଗଳ କର୍ଣ୍ଣାଟ ନାସା,
ବନ୍ଧ ସଂଯୋଗେ ନିଯୁକ୍ତ କୁନ୍ତଳ ଧରି ।
ବଡ଼େରଗୀ ଏହାଙ୍କ ଦେଶେ ଏ ରୂପେ ପୁଂସେ,
ବସୁଧାରେ ପଡ଼ୁଁ ଘଲେ ଗତି ପ୍ରକାଶେ । ୧

ବାମନ ହୋଇ ଚନ୍ଦ୍ର ପ୍ରାପ୍ତି ଆଶା କେବଳ ବିଡ଼ମ୍ବନା ମାତ୍ର । ସେହିପରି ସୂର୍ପଣଖାର ଲକ୍ଷ୍ମଣ ପ୍ରାପ୍ତି ଉଚ୍ଚ ଆଶା, ଉତ୍କଣ୍ଠା ହଠାତ୍ ପତନ ହେଲା ତା'ର ଲକ୍ଷ୍ମଣ କଣ୍ଠିକ ନାଶା, କର୍ଣ୍ଣ ଛେଦନରେ । ସୂର୍ପଣଖାର ସମସ୍ତ ଆଶା ପଣ୍ଡ ହେଲା ଏବଂ ହୃଦୟରେ ଅଜସ୍ର ଗ୍ଲାନି ନେଇ ସେ ଫେରିଥିଲା । ଏଣୁ ଏହା'ର ଭିତରେ ଉପେନ୍ଦ୍ରଙ୍କ ଅନ୍ତଃ ପ୍ରକୃତି ଚିତ୍ରଣର କଳା ପାଟବ ଦେଖିବାକୁ ମିଳେ ନାହିଁ କି ?

ଠିକ୍ ସେହିପରି ଭଳି ସୁଭଦ୍ରା ପରିଣୟରେ ସୁଭଦ୍ରାଙ୍କ ପ୍ରତି ଅର୍ଜୁନଙ୍କ ଐକାନ୍ତିକ ଅନୁରାଗ ଭାବ ଜାତକରାଇବା ପାଇଁ କବି ଉପେନ୍ଦ୍ର ଏକ ନାଟକୀୟ ପରିବେଶ ସୃଷ୍ଟି କରିଛନ୍ତି, ଯାହାର ଫଳରେ ପ୍ରେମ ବିରାଗ ଜାତ ହୋଇଥିବା ଅର୍ଜୁନଙ୍କ ମନକୁ ଜୟ କରିବା ପାଇଁ ଯାବତୀୟ ପ୍ରକାର ପ୍ରେମ ଉନ୍ମାଦନମୟୀ ଚିତ୍ରର ଆଶ୍ରୟ କରି ପରମୁହୂର୍ତ୍ତରେ ତାଙ୍କ ମନକୁ ସୁଭଦ୍ରାଙ୍କ ପ୍ରତି ଆକୃଷ୍ଟ କରାଇଅଛନ୍ତି । ଏବଂ ଅର୍ଜୁନ ଉତ୍କଣ୍ଠିତ ହୃଦୟରେ ସୁଭଦ୍ରାଙ୍କୁ ଭାବବିହ୍ୱଳିତ ହୋଇ ତନ୍ମୟ ଚିତ୍ତରେ ଗୃହିଁ ରହିଅଛନ୍ତି । ତାଙ୍କର ଅନୁରାଗ ଏତେ ବୃଦ୍ଧି ହୋଇଛି ଯେ ସେ ଝିଲ୍ଲି ଝଙ୍କାରରେ ଓ ପବନର ସୁଗନ୍ଧରେ ପ୍ରିୟାର ଆଗମନୀ ଭାବ ନିର୍ଦ୍ଦେଶ କରିଅଛନ୍ତି । ଭଞ୍ଜଙ୍କ ଭାଷାରେ—

---

୧—ବୈଦେହୀଶ ବିଳାସ—୨୩ ଛାନ୍ଦ

"ଶୁଣିଲେ ଯେଉଁ ବାଗେ ଝିଲ୍ଲି ଝଙ୍କାର ।
ସେହି ବାଗରେ କର୍ଣ୍ଣ ଟେକେ ତାହାର ॥
ସୁଗନ୍ଧିତ ସମୀର ଯେବେ ବହଇ । ସୀମନ୍ତିନୀ ବକ୍ଷେ କଲି ମଣଇ ॥
ସଦନର କଳଶକୁ ଅନାଇ । ସ୍ତନ ଭ୍ରମ ତହିଁରେ ଉପୁଜଇ ॥
ସ୍ତମ୍ଭ ଗ୍ରହେ ପାଇ ଭୁଜ ମାଧୁରୀ । ସୁବିତାନ ଦର୍ପଣ ମୁଖ ପରି ॥
ସରଞ୍ଜିତ ଚାମର କେଶ ଛବି । ସଖୀ ଉଭା ହୋଇଛି ମନେ ଭାବି ॥
ସେ ଯେ ଉଠିକରି କର ପ୍ରସାରି । ସ୍ତବ ଏ ରୂପେ ଆରମ୍ଭିଣ କରି ॥" ୧

କବି ଉପେନ୍ଦ୍ର ଭୋଳମତି ଦୁର୍ଯ୍ୟୋଧନର ମାନସିକ ଚିତ୍ରକୁ ଉପେକ୍ଷା କରି ନାହାନ୍ତି, ଏଣୁ କବି ହସ୍ତୀ ପୃଷ୍ଠରେ ଆସୀନ ମତିଭୋଳ ଦୁର୍ଯ୍ୟୋଧନଙ୍କ ମାନସିକ କ୍ରିୟା ପ୍ରକ୍ରିୟାକୁ ଅତି ଜୀବନ୍ତ ଭାବେ ଫୁଟାଇଛନ୍ତି, ଯାହାକି କବିଙ୍କ ଭାଷାରେ—

"ସମ୍ବରବେ କରି ହସ୍ତୀ ପରେ ପ୍ରିୟା ଚିନ୍ତି
ସ୍ତନଭ୍ରମେ ତା କୁମ୍ଭ ସ୍ଥଳକୁ ଆଉଁସନ୍ତି
ସିନ୍ଦୁରରୁ ମନେ କରି
ସୁଗଇଚିକେ ପତାଳୀ ଲେଖିଛି ଚତୁରୀ
ସେ କର ଟେକିଲି ବେଳେ ବଶୁରନ୍ତି ଚିତ୍ତେ
ସରାଗୀ ହୋଇଛି କୋଳ କରିବାକୁ ମୋତେ ।" ୨

କେବଳ ଏତିକି ନୁହଁ ଭଞ୍ଜ ନାୟିକାର ଗଭୀର ଅନୁରକ୍ତ ବର୍ଣ୍ଣନା କଲାବେଳେ ମଧ୍ୟ ଅନ୍ତଃ ପ୍ରକୃତି ଜୀବନ୍ତ ହୋଇ ଉଠିଛି । ଏଣୁ ଏହାର ପ୍ରାମାଣିକ ସତ୍ୟତା ପାଇଁ ବୈଦେହୀଶ ବିଳାସର ଚତୁର୍ଦ୍ଦଶ ଛାନ୍ଦ ବିଚାର୍ଯ୍ୟ । ଠିକ୍ ଯେତେବେଳେ ରାମଚନ୍ଦ୍ର ସୁକୋମଳା

---

୧— ସୁଭଦ୍ରା ପରିଣୟ-୧୧ ଛାନ୍ଦ
୨—ସୁଭଦ୍ରା ପରିଣୟ-୧୫ ଛାନ୍ଦ

ନାୟିକା ଠାରୁ କଉଡ଼ି ନ ଛଡ଼ାଇ ହାରିବା ଭାବ ପୋଷଣ କଲେ । କାରଣ ବଳବାନ ରାମଚନ୍ଦ୍ର ଭାବିଲେ ଯେ ବଳପୂର୍ବକ ଛଡ଼ାଇବା ଦ୍ୱାରା ସୁକୋମଳ ହସ୍ତକୁ କଷ୍ଟ ଲାଗିବ । ଏହି ପ୍ରକାର ମାନସୀୟ ଅନୁରକ୍ତିକୁ ଜୀବନ୍ତ କରିବା ପାଇଁ ଉପେନ୍ଦ୍ର ଭଞ୍ଜ ଅତି ଚମତ୍କାର ଭାବେ ବର୍ଣ୍ଣନା କରି କହୁଛନ୍ତି—

"ବରାଟକେ ଅନ୍ତଃପୁରେ ଦ୍ୟୂତ ଖେଳାଇଲେ<br>
ବଳବନ୍ତ ଅବଳା ଧରଷି ନପାରିଲେ ଯେ,<br>
ବୃଦ୍ଧି-ନଖ ତଟତରୁ ଉତ୍ପାଟି ଭସାଇ<br>
ବେତସ ମଧ୍ୟରେ କିଛି କରି ନ ପାରଇ ଯେ,<br>
ବହୁଁ ପଞ୍ଚଗ୍ରାସୀ ହସ୍ତ ସ୍ଥାଳୀରୁ ନ ଗଳ<br>
ବଳପ୍ରେ ରାମ ମୂରତି ଦରଶନ୍ତେ ମୈଥିଳୀ ଯେ,<br>
ବାରି ବଧୂ ବମ୍ବେ ଯଥା ଚକୋର ସୁସ୍ନେହୀ<br>
ବସି ପତ୍ରାଚ୍ଛନ୍ନ ବୃକ୍ଷେ ଟେକ ନ ଅନାଇଁ ଯେ ।" ୧

ଏଥିରୁ ଜଣାଯାଏ ଯେ ଅନୁରକ୍ତା ସୀତା ରାମଚନ୍ଦ୍ରଙ୍କ ପ୍ରତି ଏତେ ପରିମାଣରେ ଆସକ୍ତା ଯେ ସୁବର୍ଣ୍ଣ ବଳୟରେ ପ୍ରତିବିମ୍ବିତ ଶ୍ରୀରାମ ମୂର୍ତ୍ତିକୁ ମନପୂରାଇ ଦେଖିନେବା ପାଇଁ ପଞ୍ଚଗ୍ରାସୀ ବେଳେ ଥାଳରୁ ହାତକୁ ବାହାର ନକରି ସ୍ଥିର ରଖିଥିଲେ । ଠିକ୍ ଯେଉଁପରି ପତ୍ରାଚ୍ଛନ୍ନ ବୃକ୍ଷ ଶାଖାରେ ଚକୋର ବସି ବସି ବୃକ୍ଷ ନିମ୍ନ ଜଳରାଶିରେ ପ୍ରତିବିମ୍ବିତ ଚନ୍ଦ୍ରକୁ ମନପୂରାଇ ଦେଖିନେବା ପାଇଁ ମୁଖ ଫେରାଇବାକୁ ଦ୍ୱିଧା ପ୍ରକାଶ କରିଥାଏ । ଏଥିରୁ ଉପେନ୍ଦ୍ରଙ୍କ ଅନ୍ତଃ ପ୍ରକୃତି ଚିତ୍ରଣର ସିଦ୍ଧହସ୍ତତା ପ୍ରତିପାଦିତ ହୁଏ ନାହିଁ କି ? ଏ ପ୍ରକାର ଅନ୍ତଃ ପ୍ରକୃତିର ଜୀବନ୍ତ ଚିତ୍ର ଅନ୍ୟ କୌଣସି କାବ୍ୟରେ କିମ୍ବା ଅନ୍ୟ କୌଣସି ସାହିତ୍ୟରେ ଦେଖିବା ବିରଳ ।

---

୧—ବୈଦେହୀଶ ବିଳାସ—୧୪ ଛାନ୍ଦ

ଏହି ଘଟିବ, ଯଦି ଆମେ ଉପେନ୍ଦ୍ରଙ୍କ କବି ପ୍ରତିଭାକୁ ଏବଂ ଉପେନ୍ଦ୍ର ସାହିତ୍ୟକୁ ବିଶ୍ଳେଷଣ କରିବାଁ, ତାହା ହେଲେ ଜାଣିପାରିବା ଯେ ଉପେନ୍ଦ୍ର କ ଅନ୍ତଃ-ପ୍ରକୃତି କ ବହିଃ ପ୍ରକୃତି ବର୍ଣ୍ଣନାରେ ଏକ କୁଶଳୀ ତଥା ଦକ୍ଷ କଳାକାର—ଏଥିରେ ସତ୍ୟର ଅପଳାପ ଆଦୌ ନାହିଁ । କିନ୍ତୁ ଯେଉଁମାନେ କହନ୍ତି "ମୋଟ ଉପରେ ନାୟି ରୂପ ଚିତ୍ରଣରେ ଭଞ୍ଜଙ୍କର ସୌନ୍ଦର୍ଯ୍ୟବୋଧର ଗଭୀରତା ନଥିଲା; ଏ କ୍ଷେତ୍ରରେ ସେ କେବଳ ଥିଲେ ଜଣେ ନିପୁଣ କାରିଗର, ରସିକ କଳାକାର ନୁହନ୍ତି । × × ଭଞ୍ଜୀୟ ନାୟିକାଙ୍କ ରୂପ ଭିତରେ ପ୍ରକାଶ ପାଏ ଏକ ପ୍ରକାର ନିର୍ଜୀବ ସ୍ଥାଣୁତା । କାରଣ ଭଞ୍ଜଙ୍କର କୌଣସି ନାୟିକା ଗତିଶୀଳା ନୁହନ୍ତି । × × ମାତ୍ର ସୌନ୍ଦର୍ଯ୍ୟର ଏହି ସ୍ଥାଣୁତାକୁ ସୌନ୍ଦର୍ଯ୍ୟର ଗାମ୍ଭୀର୍ଯ୍ୟ କହିବା ଠିକ୍ ହେବ ନାହିଁ । × × ମୋଟ ଉପରେ ଭଞ୍ଜୀୟ ନାୟିକାକୁ ବିମାନରେ ବସାଇ ତାର ରୂପ ଆଳଙ୍କାରିକ ବର୍ଣ୍ଣ ବିନ୍ୟାସରେ ସ୍ତୁତିମୂଳକ ବର୍ଣ୍ଣନା କରାଯାଇ ନପାରେ ।" ୧

ଏ ମତକୁ ପାଠକ ହୁଏତ ସହଜରେ ଗ୍ରହଣ କରିପାରେ ନାହିଁ ।

---

୧—ରାଧାନାଥ ଚରିତ୍ର-ନାୟିକାରୂପ ଚିତ୍ରଣରେ ରାଧାନାଥ,

# ଭଞ୍ଜ ଅତି ଲୋକପ୍ରିୟ କାହିଁକି ?

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଉପରେ 'ଉତ୍କଳ ମଧୁପ' (୧) 'ଉତ୍କଳ ପ୍ରଭା' (୨) ପ୍ରଭୃତି ପତ୍ରିକା ଏକଦେଶଦର୍ଶୀ ମନ୍ତବ୍ୟ ପ୍ରକାଶ କରିଥିଲେ । ବିଜୟ ଚନ୍ଦ୍ର ମଜୁମଦାର, ବିଶ୍ୱନାଥ କର ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ପ୍ରମୁଖ ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟ ଉପରେ ଯେଉଁ ଆଲୋଚନା କରିଥିଲେ, ତାହା ବାସ୍ତବରେ "ଚକୁଳି ଖାଇବା ଛାଡ଼ି ଛିଦ୍ର ଗଣିବା ନ୍ୟାୟକୁ ଅନୁସରି" ଥିଲା (୩)। ଏମାନଙ୍କ

---

୧ । ବର୍ଷ ମଧ୍ୟରେ ୧୯ ଥର ଅଧିବେଶନ ହୋଇଥିଲା । ଏଥିରେ ରଚନା ପାଠ ଏବଂ ଲାବଣ୍ୟବତୀ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀ ସମାଲୋଚନା ହୋଇଥିଲା । ପ୍ରଥମୋକ୍ତ ପୁସ୍ତକର ବିଶେଷ ଅଶ୍ଳୀଳତାର ପରିଚୟ ମିଳିବାରୁ ସଭା ତାକୁ ତ୍ୟାଗ କରି ବର୍ତ୍ତମାନ ଶେଷୋକ୍ତ ଗ୍ରନ୍ଥକୁ ଗ୍ରହଣ କରିଅଛନ୍ତି ।

୨ । ଭଞ୍ଜକବି ସ୍ୱୀୟ ଗ୍ରନ୍ଥମାନଙ୍କରେ ଆଦିରସ ସ୍ୱରୂପ ହଳାହଳ ସମୁଦ୍ର ମନ୍ଥନ କରିଅଛନ୍ତି । ଏପରି ଗ୍ରନ୍ଥ ସାମାଜିକ ବୈଗୁଣ ଜନ୍ମାଇବାକୁହିଁ ସକ୍ଷମ । ଯେଉଁ ଗ୍ରନ୍ଥ ପାଠ କଲେ ସମାଜସ୍ଥ ସମସ୍ତଙ୍କୁ ନୀତିଶିକ୍ଷା, ଚରିତ୍ର ଗଠନ ଓ ସାମାଜିକତା ଶିକ୍ଷା ନିମନ୍ତେ ସାହାଯ୍ୟ କରିପାରେ, ତାହା ପ୍ରକୃତ ସାହିତ୍ୟ ଅଟେ । ଏଭଳି ସାହିତ୍ୟ ଓଡ଼ିଆରେ ନାହିଁ ।

୩ । ଗୌରୀଶଙ୍କର ରାୟ—ଉତ୍କଳ ଦୀପିକା ।

ସମାଲୋଚନାର ଦୃଷ୍ଟିଭଙ୍ଗୀ ଉନ୍ନତ ରୁଚିସମ୍ପନ୍ନ ନ ଥିଲା । ତାହା "କବିଗତ, କାବ୍ୟଗତ ଓ ଭାଷାଗତ ନ ହୋଇ, ହୋଇଥିଲା ବ୍ୟକ୍ତିଗତ, ଜାତିଗତ ଓ ଦଳଗତ । ଏହା ଥିଲା ମୂଳରୁ ଅଶ୍ଳୀଳ ରୁଚି, ଅଶ୍ଳୀଳ ଭାବ ଏବଂ ଗ୍ରାମ୍ୟତା ଦୋଷରେ ଆପ୍ଳୁତ" (୧) ଭଞ୍ଜଙ୍କର ବ୍ୟକ୍ତିଗତ ନିନ୍ଦା ଓ କୁତ୍ସାରଟନାରେ କେତେକ ଶତଜିହ୍ଵ ହୋଇ ଉଠିଥିଲେହେଁ ସେମାନଙ୍କ ଏକଦେଶଦର୍ଶୀ ସମାଲୋଚନାରେ ଭଞ୍ଜ ସମ୍ବନ୍ଧୀୟ କେତେକ ସତ୍ୟାସତ୍ୟ ପ୍ରକାଶ ପାଇଥିଲା । ରାମନାରାୟଣ ରାୟ ଭଞ୍ଜଙ୍କ ବିରୁଦ୍ଧରେ କହିବାକୁ ଯାଇ ପ୍ରକାଶ କରିଥିଲେ – "ଓଡ଼ିଶାର ସାହିତ୍ୟ ଜଗତରେ କବି ଉପେନ୍ଦ୍ର ଭଞ୍ଜଙ୍କୁ ଶୀର୍ଷସ୍ଥାନ ଅଧିକାର କରି ବସିଥିବାର ନୟନ ଗୋଚର ହୁଏ । × × × ଭଞ୍ଜଦଳୀୟ କବିମାନଙ୍କର ରଚନାର ଉତ୍କଟ ଦୋଷମାନ ଯେ ଲୋକଙ୍କ ଚକ୍ଷୁରେ ଶୀଘ୍ର ପ୍ରତିଭାତ ହୁଏନାହିଁ, ତାହାର ଆହୁରି ଗୋଟିଏ ପ୍ରଧାନ କାରଣ ଅଛି । ଏ ପ୍ରଦେଶର ଲୋକେ ଛନ୍ଦବଦ୍ଧ କବିତା ପଢ଼ିବାବେଳେ ତାହା ପ୍ରାୟ ରାଗରାଗିଣୀରେ ବୋଲନ୍ତି । ରାଗରାଗିଣୀରେ ମୁଗ୍ଧ ହୋଇ ଶ୍ରୋତୃବୃନ୍ଦ କବିତାର ପ୍ରକୃତ ଅଙ୍ଗ ସୌଷ୍ଠବ ପ୍ରତି ଦୃଷ୍ଟି ରଖନ୍ତି ନାହିଁ" । (୨) ମନମୋହନ ଚକ୍ରବର୍ତ୍ତୀ ନାନା ଦୋଷ ଦେଖାଇବା ସତ୍ତ୍ୱେ ବି କହିଛନ୍ତି—"Upendra Bhanja is in Oriya literature the most voluminous author, the earliest and most prominent fictional poet, the most obscure, the most unintelligible and on the whole the best writer of the rhetorical excellences."

---

୧ । ଉତ୍କଳ କବିକଳା—ଶ୍ରୀ ଭୋଳାନାଥ ସାମନ୍ତରାୟ ।

୨ । ଉତ୍କଳପ୍ରଭା ।

ଉପର୍ଯ୍ୟୁକ୍ତ ଦୁଇଟି ମତରୁ ଏଠାରେ ଏତିକି ଲକ୍ଷ୍ୟ କରା-ଯାଇପାରେ ଯେ, ଲାଲ୍ ରମନାଥପ୍ରସାଦ ବସୁ ଓ ମନମୋହନ ଚକ୍ରବର୍ତ୍ତୀ ମହାଶୟ ଭଞ୍ଜଙ୍କ କାବ୍ୟର ଦୋଷ ବାଛୁ ବାଛୁ ଭଞ୍ଜଙ୍କର ଛନ୍ଦମାଧୁରୀ ଓ ସାଙ୍ଗୀତିକତା ଉପରେ ସଠିକ୍ ମତାମତ ଦେଇଛନ୍ତି । ପଣ୍ଡିତ ଗୋପବନ୍ଧୁ ଦାସ ଏହି ମତକୁ ଆହୁରି ଦୃଢ଼ୀଭୂତ କରିବାକୁ ଯାଇ ଗାଇଛନ୍ତି—

"ଗାଏ ତବ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା
ହଳେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟ ରଙ୍ଗେ ବାରାଙ୍ଗନା ।"

(ଅବକାଶ ଚିନ୍ତା)

ଏଠାରେ ଗୋପବନ୍ଧୁ ଦୁଇଟି କଥା ଉପରେ ବେଶୀ ଗୁରୁତ୍ୱ ଦେଇଥିବାର ମନେ ହୁଏ । ଗୋଟିଏ ହେଉଛି ଭଞ୍ଜଙ୍କର ପାଣ୍ଡିତ୍ୟ ଓ ଅନ୍ୟଟି ହେଉଛି ଗୀତିବୋଧତା । ପାଣ୍ଡିତ୍ୟ ଦିଗଟି ଏ ଦେଶର 'ଧୀର', 'ପଣ୍ଡିତ', 'ସୁଧୀ', 'ଅର୍ଥୀ' ଜନଙ୍କ ନିମିତ୍ତ ଉଦ୍ଦିଷ୍ଟ । ଏପରି ବ୍ୟକ୍ତି ପ୍ରାୟ ଶତକଡ଼ା ୧୦ରୁ ଅଧିକ ନୁହନ୍ତି । ମାତ୍ର ଯେଉଁ ଦିଗଟି ଆଜି ଭଞ୍ଜଙ୍କୁ ସର୍ବାଜନାଦୃତ କରି ଗଣକବି ଆସନରେ ବସାଇଛି, ସେ ଦିଗଟି ହେଉଛି ସାଙ୍ଗୀତିକତା । କାଳନ୍ଦୀ ଚରଣ ପାଣିଗ୍ରାହୀ ପ୍ରତ୍ୟକ୍ଷ ଭାବରେ ନ ହେଲେହେଁ ପରୋକ୍ଷ ଭାବରେ ଏହି ମତଟିକୁ ସ୍ୱୀକାର କରି କହିଅଛନ୍ତି—"ଉପେନ୍ଦ୍ର ଭଞ୍ଜ ନିଜେ ଶ୍ରମିକ ନଥିଲେ କିମ୍ବା ଶ୍ରମିକ ଜୀବନର ଚିତ୍ର ଫୁଟାଇବାରେ ସିଦ୍ଧହସ୍ତ ନୁହନ୍ତି । ଅଥଚ ସବୁ ଶ୍ରେଣୀର ପାଠକ ମଧ୍ୟରେ ଆଦର ଲାଭ କରି ସାହିତ୍ୟର ପ୍ରକୃତ ଧର୍ମ ରକ୍ଷା କରିଛନ୍ତି ସ୍ୱୀୟ କଳାପାଟବ ବଳରେ" (ଧୂପିଷ୍ଟ ସଂସ୍କୃତି) । ଭଞ୍ଜଙ୍କ ଭାଷାରେ—

"ମୂର୍ତ୍ତିବନ୍ତ କର ମୃଦୁଗୀତ ବସ୍ତୁରଇ
ଏଣୁ କରିଥିବ ଅଳଙ୍କାର ଯୁକ୍ତ ହୋଇ
ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥୀଜନ ପ୍ରକରକୁ ଆନନ୍ଦ କରିବ" ହେ
(ଲାବଣ୍ୟବତୀ) (୧।୭-୮)

ଅର୍ଥୀଜନ ସମୂହଙ୍କୁ ଏହାର ପଦବିନ୍ୟାସ, ଅଳଙ୍କାର ଧ୍ୱନି, ରସ, ରୀତି, ଧ୍ୱନି ଲକ୍ଷଣା, ବ୍ୟଞ୍ଜନା ନିଶ୍ଚୟ ମୁଗ୍ଧ କରିବ । ମୃଦୁଗୀତ ଯେ ସାକ୍ଷର ନିରକ୍ଷର ସମସ୍ତଙ୍କୁ ମୋହିତ କରିବ, ଏହା ସୁସ୍ପଷ୍ଟ । ଏଣୁ ମନେହୁଏ ଭଞ୍ଜ ନିଜର ଛନ୍ଦ ଯୋଜନା ଓ ଗୀତିମୂଲ୍ୟ ନେଇ ସମସ୍ତଙ୍କ ନିକଟରେ ପରିଚିତ । ସାଙ୍ଗୀତିକତା ଆଜି ଭଞ୍ଜଙ୍କୁ ଗଣକବି ଜରିଛନ୍ତି କହିଲେ କିଛି ଅତ୍ୟୁକ୍ତି ହେବନାହିଁ । ତାଙ୍କ କବିତାର ଅର୍ଥ ଯିଏ ବୁଝିଲାତ ବୁଝିଲା; ଯେ କି ନବୁଝିଲା ସିଏ ବି ଅନୁପ୍ରାସାଦି ଅଳଙ୍କାରର ଅନୁରଣନ, ସଙ୍ଗୀତର ସ୍ୱର ମାଧୁରୀ, ଛନ୍ଦର ସୁଲଳିତ ତାନରେ ଆପେ ଆପେ ଭାସିଗଲା "ମନ ଫୁଲିଣିଆ ଗୀତ ଗାଏ" ନ୍ୟାୟରେ ମନ ଯେତେବେଳେ ଆନନ୍ଦ ଅଛି, ସେତେବେଳେ ଭଞ୍ଜଙ୍କ ଛାନ୍ଦରୁ ବା ସଙ୍ଗୀତରୁ ପଦେ ଅଧେ ଗାଇଲା । ବିଶ୍ୱନାଥ କର ଭଞ୍ଜଙ୍କୁ ସମାଲୋଚନା କରି କହିଛନ୍ତି ଭଞ୍ଜ "ଦେଶ କାଳାତୀତ" କବି ନୁହନ୍ତି, "ଦେଶକାଳର" କବି । (୧) କିନ୍ତୁ ଏଠାରେ ସମାଲୋଚକ ମହାଶୟ ଭାବ ଉପରେ ଗୁରୁତ୍ୱ ଦେଇ ସଙ୍ଗୀତ ଦିଗଟିକୁ ଏକଦମ୍ ଭୁଲି ଯାଇଛନ୍ତି । କାରଣ "ସ୍ୱର ଶିଳ୍ପ ସଙ୍ଗୀତ । ଭାଷାରେ ସ୍ୱରସ୍ପର୍ଶରେ ଭାବର ପ୍ରକାଶ ପାଏ । ଭାବ ଶୂନ୍ୟ ସ୍ୱରର ମଧ ଗୋଟିଏ ଆକର୍ଷଣ ଶକ୍ତି ଅଛି । ଭାବ ନଥିଲେ ହେଁ ତାହା କର୍ଣ୍ଣକୁ ତୃପ୍ତିକର ବୋଧହୁଏ । ସଙ୍ଗୀତର

(୧) ବିବିଧ ପ୍ରବନ୍ଧ—କବି ଉପେନ୍ଦ୍ର ଭଞ୍ଜ

ବିଭିନ୍ନ 'ଗୀତ'ର ଅନୁଶୀଳନ, ସମ୍ପୂର୍ଣ୍ଣ ଭାବମୟ, ସ୍ୱରର ମଧୁରତା କର୍ଣ୍ଣମନକୁ ଏକାବେଳକେ ଆକର୍ଷଣ କରିଦିଏ । ଏହି ହେତୁରୁ ସଙ୍ଗୀତର ଭାବପ୍ରତି ସାଧାରଣ ଜନମାନେ ସେତେ ମନଯୋଗ ଦିଅନ୍ତି ନାହିଁ । ସ୍ୱରର ଉତ୍ତରୋତ୍ତର ବିକାଶରେ ସଙ୍ଗୀତରେ ଭାବ ପ୍ରାୟଶଃ ମଳିନ ହୋଇଯାଏ । ସୁମଧୁର ସ୍ୱର ଶୁଣାଯିବା ମାତ୍ରକେ ଇନ୍ଦ୍ରିୟକୁ ଆକର୍ଷଣ କରିଦିଏ । (୧) । ତେଣୁ ଭାବଜ୍ଞାନହୀନ ଶିଶୁ, ପଶୁ ଓ ସର୍ପ ସଙ୍ଗୀତରେ ଆକୃଷ୍ଟ ହୁଅନ୍ତି ।" (୨) । ଆହୁରି ମଧ୍ୟ ଦେଶ-ଜାତି-ବର୍ଣ୍ଣ-ନିର୍ବିଶେଷରେ ସମସ୍ତେ ଭାଷା ବା ଭାବ ବୁଝନ୍ତୁ ବା ନ ବୁଝନ୍ତୁ ସ୍ୱର ଲହରୀ ପ୍ରତି ଆକୃଷ୍ଟ ହୋଇଥାନ୍ତି । ଏ ଦୃଷ୍ଟିରୁ ବିଚାର କଲେ ଭଞ୍ଜ ଦେଶ କାଳାତୀତ କବି ସାର୍ବଜନୀନତା ନେଇ ଯଦିଚ ଭାଷାନ୍ତରିତ ହେଲେ ଆଳଙ୍କାରିକତା ବାଧାପ୍ରାପ୍ତ ହୁଏ । ଉଦାହରଣ ସ୍ୱରୂପ ଜଣେ ଉପଯୁକ୍ତ ସଙ୍ଗୀତଜ୍ଞ ଯଦି ରାଗ, ତାଳ ଦେଇ ସୁମଧୁର ସ୍ୱରରେ ଗାନ କରେ—

"ଶ୍ରେଣୀ କି ଶ୍ରେଣୀ ନାରନ୍ତି ପୁଣି କଟି କଙ୍କିଣୀ
ମଧୁର ଆଣି ଶ୍ରବଣେ ଶୁଣି ହର ଘରଣୀ ହୋଇବେ ଜାଣି
ଶ୍ୱତ୍ରୁ ବିପକ୍ଷୀ ସ୍ମିତ ତରୁଣୀ ଦେଇ ତ୍ତ୍ହାଣୀ କହନ୍ତି ବାଣୀ
ଦେଖି ମିତଣୀ ମନୋହାରଣୀ ପାଶ ଏ ଠାଣି ଯେ
ବିକା ନୟିନ ଏଥି କେଉଁ ତରୁଣୀ ଗୋ
ବିଲୋକନେ ସ୍ମାରିଦ ମଦନ ରାଣୀ ଗୋ

---

(୧) ପଣ୍ଡିତ କୁଳମଣି ଦାସ
(୨) ଶିଶୁର୍ବେତ୍ତି ପଶୁର୍ବେତ୍ତି ବେତ୍ତିଃ ଗୀତରସଂ ଫଣୀ

ଭ୍ରୂ ଧାରୁଣୀ କାର୍ମୁକ ଆଣି ଗୃରୁ ଗୃହାଣି ବଂଶକୁ ଶାଣି
ବନ୍ଧୁ ହ୍ରୁ ଝାଣି କେଉଁ ସୁବେଣୀ ରଖିବ ଆଣି ଗୋ ।" (୧)

ତାହାହେଲେ ପାଷାଣ ହୃଦୟଧାରୀ କେଉଁ ଲୋକର ଏହି କବିତାର ଅନୁପ୍ରାସର ଅନୁରଣନ, ପାହାଡ଼ିଆ 'କେଦାର' ରାଗରେ ମନ୍ତ୍ରମୁଗ୍ଧ ନ ହେବ ? ଯେଉଁମାନେ କଧମ୍ଭ ଭଞ୍ଜ ବ୍ରହ୍ମପୁରଠାରୁ ବାଲେଶ୍ୱର ପାର ହୋଇ ଯାଇନାହାନ୍ତି ସେମାନେ କେବେ ଭଞ୍ଜଙ୍କର ଏ ଦିଗକୁ ଦୃଷ୍ଟି ଦେଇଅଛନ୍ତି କି ? ଯେଉଁମାନେ ଭଞ୍ଜଙ୍କର "ଦ୍ୱିଜାମୁ ଯାମିନୀରେ ମୋ ପ୍ରାଣ ସହି,
ଦନେ ପଲଙ୍କେ ଥିଲ ମୋ କୋଳେ ଶୋଇ" ।

ବା

"ଆଜ ଦେଖିଲରେ ନବୀନ ବୟସୀ ବାଳା
ପାଇଥାନ୍ତି ଯେବେ            ଚନ୍ଦ୍ରବଦନୀକ
କରିଥାନ୍ତି ଗଳାମାଳା (ପଦ)
ଦୂରୁ ଦେଖି ମୋତେ            କୁରଙ୍ଗୀ ନୟନା
ଡର ଡର ହୋଇଗଲ୍
କାଖେ କୁମ୍ଭ ଘେନି            କେଉଁଟି ଗୃହାଁରେ
ମଦନ ଶର ଦହଲ୍"—

ଚଢ଼ିଥାନ୍ତି ବା ଗୋଟିପୁଅ ନାଚରୁ ଶୁଣିଥାନ୍ତି ସେମାନେ ଏହାର ଶ୍ରୁତିମଧୁର ରାଗତରଙ୍ଗିଣୀରେ ବହ୍ନକତ, ତନ୍ମୟିଭୂତ ହୋଇ-

(୧) (କ) ବଦଗ୍ଧ ଚନ୍ଦ୍ରାମଣି···ଛନ୍ଦ, ଅଭିମନ୍ୟୁ ସାମନ୍ତ ସିଂହାର
(ଖ) Music hath charms to sooth the savage breast
(ଗ) Music is the universal language of mankind

ଯାଆନ୍ତି । ମନେହୁଏ, ରସିକ ବ୍ୟକ୍ତି କର୍ଣ୍ଣ ଭୃଙ୍ଗରେ ଯେପରି ଏଗୁଡ଼ାକୁ ପାନ କରି ଯାଆନ୍ତି । ଆଖଡ଼ା ଘରେ ଗୋଟିପୁଅ ଉପେନ୍ଦ୍ର ସଙ୍ଗୀତ ବୋଲେ । ବାହାର ଶଗଡ଼ଆ, ବେଉଷଣବେଳେ ହଳିଆ ମନ ଆନନ୍ଦରେ ଭଞ୍ଜଙ୍କର ଗୀତ ଗାନ କରିଥାଏ । ରସ୍ତାର ଭିକାରି ମଧ୍ୟ ଏ ଗୀତ ଅତି ଦରଦଭରା କଣ୍ଠରେ ଗାଇଥାଏ । ପାଲାବାଲା ଭଞ୍ଜ ସାହିତ୍ୟ ଓ ସଙ୍ଗୀତ ବୋଲି ଶ୍ରୋତାମାନଙ୍କୁ ବଶୀଭୂତ କରିଥାଏ । ରୂପସୀ ବେଶ୍ୟା ଗୀତ ଗାଇ ଗରାଖମାନଙ୍କର ମନ ମୋହିଥାଏ ଏହି ଗୀତ ବଳରେ । ଗୋପବନ୍ଧୁଙ୍କ ଭାଷାରେ— "ସଙ୍ଗୀତ ଓ ଗାନ କେବଳ ଶିକ୍ଷାପ୍ରଦ ନୁହେଁ, ମନୁଷ୍ୟର ସହଜ ଗୁଣ । ଯହିଁ ଜୀବନ ତହିଁ ସଙ୍ଗୀତ" ।

ଏ ସବୁ ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ, ସଙ୍ଗୀତ ହିଁ ଆଜି ଉପେନ୍ଦ୍ରଙ୍କୁ ଏତେ ବଡ଼ କରି ତୋଳିଛି । ଗୋପବନ୍ଧୁ ଦାସଙ୍କ ମନ୍ତବ୍ୟ ଭଞ୍ଜ ସଙ୍ଗୀତର ଯଥାର୍ଥ ମୂଲ୍ୟ ନିର୍ଦ୍ଧାରଣ କରିଛି । ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟଙ୍କ ଭାଷାରେ—

"ଗୋପବନ୍ଧୁ ଦୁଇଟି ମାତ୍ର ଶବ୍ଦ ବ୍ୟବହାର କରି ଭଞ୍ଜୀୟ କାବ୍ୟ-ଗୌରବର ପ୍ରତିଷ୍ଠାର ମୂଳ କାରଣଟି ଯଥାଯଥ ଭାବରେ ବ୍ୟକ୍ତ କରିପାରିଛନ୍ତି । ଶବ୍ଦ ଦୁଇଟି 'ଗାଏ' ଓ 'ବୋଲେ' । ପ୍ରକୃତରେ ଦେଖିବାକୁ ଗଲେ ଗାନ ଯୋଗ୍ୟତା ହିଁ ଉପେନ୍ଦ୍ରଙ୍କ ରଚନା ସମ୍ଭାରକୁ ଏତେ ଲୋକପ୍ରିୟ କରିଛି" । (୧)

ସ୍ୱର ଶିଳ୍ପ ସଙ୍ଗୀତ, ଭାଷା ଶିଳ୍ପ କବିତା, ଭାଷାରେ ସ୍ୱର, ସ୍ୱରରେ ଭାବ ପ୍ରକାଶ ପାଏ । ସ୍ପନ୍ଦନ ଓ ଶୃଙ୍ଖଳାରୁ ଯେଉଁ ଗତିରେ

(୧) ସାହିତ୍ୟ ଓ ସାହିତ୍ୟିକ

ଶ୍ରୁତିମଧୁର ପଦବିନ୍ୟାସ କରାଯାଇ ଶ୍ରୋତା ବା ପାଠକର ଚିତ୍ତରେ ରସ ସଞ୍ଚାର କରାଯାଏ, ତାହାକୁ ଛନ୍ଦ କହନ୍ତି । ସ୍ୱରର ଯେଉଁ ଖଣ୍ଡରେ କବିତା ପାଠ କଲେ ଭାଷାନଭିଜ୍ଞ ବ୍ୟକ୍ତି ମଧ୍ୟ କବିତା ବର୍ଣ୍ଣିତ ରସରେ ଅନ୍ତଭୂକ୍ତ ହୋଇପଡ଼େ, ସଙ୍ଗୀତ ଶାସ୍ତ୍ରରେ ତାହାକୁ ରାଗ କହନ୍ତି । ଅର୍ଥାତ୍ କବିତା ପାଠର ସାଧାରଣ ଖଣ୍ଡକୁ ଛନ୍ଦ ଓ ରସୋଦ୍ଦୀପକ ସଙ୍ଗୀତ ପରି ଗାନ କରିବା ଖଣ୍ଡକୁ ରାଗ କହନ୍ତି । ସ୍ୱର ଧର୍ମରେ ତୀବ୍ରତା (Pitch), ଗାମ୍ଭୀର୍ଯ୍ୟ (Loudness), ସ୍ୱରଭଙ୍ଗ (Tone colour) ଏବଂ ସ୍ୱର ଦୈର୍ଘ୍ୟ ବା ସ୍ୱରର କାଳ ପରିମାଣ (Duration) ନିହିତ ଥାଏ ।

ଏ ସବୁ ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ, ଭଞ୍ଜ ସାହିତ୍ୟ ଓ ସଙ୍ଗୀତ ନାନାବିଧ ରାଗ, ରାଗିଣୀ, ତାଳର ଆକର । ସଙ୍ଗୀତ ଥିଲା ଉପେନ୍ଦ୍ର ଭଞ୍ଜଙ୍କର ଏକ ସହଜାତ ଗୁଣ । ସଙ୍ଗୀତର ବିକାଶରେ ଜୀବନ ବିସ୍ତୃତ ହୁଏ । ହୃଦୟର ସମସ୍ତ ଜଡ଼ତା ଭାଙ୍ଗି ଯାଏ । ସମାଲୋଚକ ଭାଷାରେ—

"ଉପେନ୍ଦ୍ରଙ୍କ ପୂର୍ବରୁ ଓଡ଼ିଆ ସଙ୍ଗୀତ ଗୌରବାନ୍ୱିତ ହେବାର ଦୃଷ୍ଟାନ୍ତ ମିଳେ ନାହିଁ । × × × ଶାସ୍ତ୍ରୀୟ ରାଗରାଗିଣୀ ସେ ଯୁଗରେ ପ୍ରାଧାନ୍ୟ ଲାଭ କରି ନଥିଲା । ଭଞ୍ଜ ପୂର୍ବବର୍ତ୍ତୀ ଯୁଗର ଗୀତ କବିତା ଥିଲା ଭକ୍ତି ଓ ପ୍ରେମମୂଳକ । ମାତ୍ର ଓଡ଼ିଆ ଗୀତ କବିତାର ଆଙ୍ଗିକ ଓ ଆତ୍ମିକ ପରିବର୍ତ୍ତନ ଉପେନ୍ଦ୍ର କରିଥିଲେ ଓ ଓଡ଼ିଆ ସଙ୍ଗୀତ ପରମ୍ପରାର ଯୋଗ୍ୟଦାୟାଦ ହୋଇଥିଲେ । ତାହାଙ୍କ ରଚିତ ଚଉପଦୀହାର, ଚଉପଦୀ ଭୂଷଣ, ଚଉପଦୀ ଚନ୍ଦ୍ର ପ୍ରଭୃତି ଆଜି ଗୋଟିପୁଅଙ୍କ କଣ୍ଠରେ ଶୋଭା ପାଏ । ଏହା ବିଭିନ୍ନ ସ୍ୱର, ରାଗ ଓ ତାଳରେ ଗୀତ ହୁଏ । ବିଜୟ ଚନ୍ଦ୍ର ମଜୁମ୍‌ଦାରଙ୍କ ଲେଖା

ଉପେନ୍ଦ୍ରଙ୍କ ମହତ୍ତ୍ୱ ସୃଷ୍ଟି କରିଥିଲେ ହେଁ ଏ ସଙ୍ଗୀତ ଧାରାଟି ଅସ୍ୱୀକୃତ ହୁଏନାହିଁ । (୧)

ସଙ୍ଗୀତ ଏକ ଉତ୍କୃଷ୍ଟ ବିଦ୍ୟା । ସଙ୍ଗୀତର ଉତ୍କର୍ଷରୁ ଜାତିର ସମୁନ୍ନତ ଜଣାପଡ଼େ । ଉପେନ୍ଦ୍ର, କବିସୂର୍ଯ୍ୟ, ଅଭିମନ୍ୟୁ, ଗୋପାଳ କୃଷ୍ଣ, ବନମାଳୀ ପ୍ରଭୃତିଙ୍କ ସଙ୍ଗୀତ ଉତ୍କଳ ଜାତୀୟତାର ପରିମାପକ । ଛାନ୍ଦ ଲେଖା ଉତ୍କଳର ବିଶେଷତ୍ୱ । "ଗୀତବାଦ୍ୟ-ନୃତ୍ୟାଦି ତ୍ରୟଂ ସଙ୍ଗୀତମୁଚ୍ୟତେ" । ଗୀତ, ବାଦ୍ୟ, ନୃତ୍ୟ ଏ ସମସ୍ତ ସଙ୍ଗୀତ ବିଦ୍ୟାର ଅନ୍ତର୍ଗତ । ଶ୍ରୀକୃଷ୍ଣ ଭକ୍ତମାନଙ୍କ ଗୀତରେ ପ୍ରୀତ ହୁଅନ୍ତି । (୨) କୁହାଯାଇଛି:—ଲକ୍ଷଂ କୋଟି ଗୁଣଂ, ଗାନଂ ଗାନାତ୍ ପରତରଂ ନହି" । ଉପେନ୍ଦ୍ର ଏହି ଦୃଷ୍ଟିରୁ ଛାନ୍ଦ, ସଙ୍ଗୀତ ରଚନା କରି ଜଣକର ନ ହୋଇ ଆଜି ଗଣକର ହୋଇପାରିଛନ୍ତି ।



---

(୧) Upendra Bhanja who commenced his literary career by about the 18th Century was preferably free from worldly anxities and had no other occupation in life than to devote himself whole-heartedly to the composition of verses and to teach them professional dancing boys to sing his verses correctly. (T. S. from Oriya Literature)

(୨) ମଦ୍ଭକ୍ତାଃ ଯତ୍ର ଗାୟନ୍ତି ତତ୍ର ତିଷ୍ଠାମି ନାରଦ : (ଗୀତା)

# ଉପେନ୍ଦ୍ର ସାହିତ୍ୟ ବୈଷ୍ଣବ ଧର୍ମ-ଦର୍ଶନ ପ୍ରତି ଏକ ମୌନ ପ୍ରତିବାଦ

ସାହିତ୍ୟ ଯୁଗ ରୁଚିର ବାହକ, ସମାଜର ପ୍ରତିଛବି । ସମାଜର ରୀତି-ନୀତି, ଭାବ-ସ୍ୱଭାବ, ହସ-କାନ୍ଦ, ଧର୍ମ-ଧାରଣା, ରାଜନୀତି, ଅର୍ଥନୀତି ଏସବୁ ହିଁ ଏ ସାହିତ୍ୟ-ମୁକୁରରେ ପ୍ରତିବିମ୍ବିତ । କବିର ଜୀବନାଦର୍ଶ ଓ ବିଭିନ୍ନ ପ୍ରଚଳିତ ନୀତିପ୍ରତି ତାହାର ଦୃଷ୍ଟିକୋଣ ହୋଇ ଉଠେ ସ୍ୱତଃସ୍ଫୂର୍ତ୍ତ । କବିର ପ୍ରତିଭା ତାର କାବ୍ୟ-କୃତିରେ ଯେତିକି ନିହିତ ଥାଏ, ତାର ମହନୀୟ ଭୁଙ୍ଗ ବ୍ୟକ୍ତିତ୍ୱ ମଧ୍ୟ ତହିଁରେ ସେତିକି ନିହିତ ଥାଏ ।

ବର୍ତ୍ତମାନ ଏସବୁ ଦୃଷ୍ଟିରୁ ଭଞ୍ଜ-ସାହିତ୍ୟକୁ ଆଲୋଚନା କଲେ ଜଣାଯାଏ ଯେ, "ଦୁଇଟି ବୈଷ୍ଣବୀୟ ଧର୍ମ-ଦର୍ଶନ ତତ୍ତ୍ୱ ପ୍ରାକ୍ ଭଞ୍ଜ ଯୁଗରୁ ଓଡ଼ିଆ ସାହିତ୍ୟ ତଥା ସାମାଜିକ ଧାରାକୁ ପ୍ଲାବିତ କରି-ଥିଲା" । ସେ ଦୁଇଟି ମଧ୍ୟରୁ ଗୋଟିଏ ହେଲା ଓଡ଼ିଶୀ ବୈଷ୍ଣବର ଶୂନ୍ୟ ଦର୍ଶନ ତତ୍ତ୍ୱ ଓ ଅନ୍ୟଟି ହେଲା ଗୌଡ଼ୀୟ ବୈଷ୍ଣବ ଧର୍ମର ପରକୀୟା ପ୍ରେମ-ତତ୍ତ୍ୱ । "ଉତ୍କଳର ଆଧ୍ୟାତ୍ମିକ ସାଧନା ଓ ଜୀବନକୁ ଏ ପ୍ରେମ ଧର୍ମ ସ୍ପୃଷ୍ଟ କରି ନଥିଲେ ହେଁ, ମଧ୍ୟଯୁଗୀୟ କାବ୍ୟ-ସାହିତ୍ୟକୁ ଷୋଡ଼ଶ ଶତାବ୍ଦୀର ଶେଷ ପାଦଆଡ଼କୁ ଏହା ଗଭୀର ଭାବରେ ପ୍ରଭାବିତ କରିବା ପାଇଁ ଆରମ୍ଭ କରିଥିଲା ! ପୁଣି ସାହିତ୍ୟକୁ ରସୋଜ୍ଜ୍ୱଳ ଓ ସମୃଦ୍ଧ କରିଥିଲା ଇତି ପୂର୍ବରୁ ଓଡ଼ିଆ

କାବ୍ୟମାନଙ୍କର ଉଜ୍ଜ୍ୱଳ ଶୃଙ୍ଗାର ରସର ଯେଉଁ କ୍ଷୀଣ ଅଭିବ୍ୟକ୍ତି ଘଟିଥିଲା, ଗୌଡ଼ୀୟ ପ୍ରେମ ଧର୍ମ ତାହାକୁ ଆହୁରି ପ୍ରୋତ୍ସାହିତ କରିଥିଲା ।"(୧) ଏହି ଧର୍ମ ସ୍ୱୀୟ ପ୍ରେମ ତତ୍ତ୍ୱ ପ୍ରଚାର କରିବାକୁ ଯାଇ କହି ଉଠିଥିଲା—

"ପରକୀୟା ଭାବେ ଅତି ରସେର ଉଲ୍ଲାସ"(୨)

"ଲୋକ-ଧର୍ମ, ବେଦ-ଧର୍ମ, ଦେହ-ଧର୍ମ କର୍ମ
ଲଜ୍ଜା, ଧୈର୍ଯ୍ୟ ଦେହ ସୁଖ, ଆତ୍ମ ସୁଖ ମର୍ମ ।
ସବ ତ୍ୟାଗ କରୟେ, କରେ କୃଷ୍ଣେର ଭଜନ,
କୃଷ୍ଣ-ସୁଖ-ହେତୁ କରେ ପ୍ରେମେର ସେବନ" । (୩)

ଗୌଡ଼ୀୟ-ବୈଷ୍ଣବ ପ୍ରେମ-ତତ୍ତ୍ୱ ଦୃଷ୍ଟିରୁ ସେ ଭକ୍ତି ପରମ ପ୍ରେମରୂପା । ଯାହାକୁ ଲାଭ କରି ପୁରୁଷ ସିଦ୍ଧ, ତୃପ୍ତ ଓ ଅମୃତମୟ ହୋଇପାରେ । ମାତ୍ର ଓଡ଼ିଆ ସାହିତ୍ୟ-କ୍ଷେତ୍ରରେ ତାହା ଯେପରି ପରବର୍ତ୍ତୀ କାଳରେ ରୂପ ନେଇଛି, ଦେଖିଲେ ଜଣାଯାଏ ଯେ, ତାହା ସାମାଜିକ ଶୃଙ୍ଖଳା, ନୀତି, ନିୟମ, ଆଇନ୍, କାନୁନ୍, ପାରିବାରିକ ବନ୍ଧନ ସବୁକିଛି ଛିନ୍ନ କରି ବସିଛି । ଦିନେଇ ଦାସଙ୍କ ଗୋପୀ ଭାଷାର କେତେକ ପଂକ୍ତି ଉଦ୍ଧୃତ କଲେ, ଏ ଉକ୍ତିର ଯୁକ୍ତି-ଯୁକ୍ତତା ବେଶ୍ ଭାବରେ ଉପଲବ୍ଧି କରି ହେବ । ଦିନେଇ ଦାସଙ୍କ ଭାଷାରେ—

---

(୧) ଓଡ଼ିଆ ସାହିତ୍ୟର ମଧ୍ୟପର୍ବ, ପୃଷ୍ଠା ୨୧୨—ସୁରେନ୍ଦ୍ର ମହାନ୍ତି
(୨) ଗୋପୀ ପ୍ରେମ—ହନୁମାନ ପ୍ରସାଦ ପୋଦ୍ଦାର
(୩) ଗୋପୀ ପ୍ରେମ—ହନୁମାନ ପ୍ରସାଦ ପୋଦ୍ଦାର

"ଘୋର କରଣ ଜଣାଣ କରୁଛୁ । ସାନ ଭଉଣୀ ମୋ ପାଶରେ ଅଛୁ ॥
ନୂଆ ବୟସ ହୋଇଛୁ ତାହାର । ଅନୁକ୍ଷଣ ଚିନ୍ତା ପତି ସଙ୍ଗର ॥
କୃଷ୍ଣଙ୍କୁ ଦେଖି ଉଲ୍ଲସିଲା ଦେହ । ଅନଳ ଦେଖି ପତଙ୍ଗ ସେନେହ ॥
ନଅାଁକୁ ଦେଖି ଜଉ ତରଳଇ । ସେହିରୂପେ ମୋର ଭଉଣୀ ହେଲା
ତାର ଅସମ୍ଭାଳ ଦେଖିଲ ଯହୁଁ । ଅଙ୍ଗୁଷ୍ଠି ଦେଖାଇ ଠାରିଲ ତହୁଁ ॥
ଅନ୍ତର ହୋଇଣ ସେଠାରୁ ଗଲ । ଆର ଘରେ ଯାଇ ଚୂଳି ଜାଳିଲ ॥
ମୁହିଁ ଯିବାର ଜାଣିଣ ଶ୍ରୀହରି । ସାନ ଭଉଣୀ ସଙ୍ଗେ ପ୍ରୀତି କରି ॥
ପ୍ରହରେ କାଳ ନେଇଗଲ ପୁଣ । ମୁଁ ଯାଇ ମିଳିଲ ତାଙ୍କ ପାଶେଣ ॥
ଦେଖିଲ ମାଲବନ୍ଧ ବଡ଼ ଗାଢ଼ । ଅଣ ଆୟତ ଭଉଣୀ ମୋହର ॥
ଠାରି ଦେଲା ମୋତେ ପିଇବ ପାଣି । ବେଗେ ଜଳ ଦେଲ ହସ୍ତରେ ଆଣି
ସୁରତ ସରିଲା ପିଇଲା ଜଳ । ମୋତେ ଧଇଲେ ମଦନ ଗୋପାଳ ॥
ନାନା ରସରେ ଲୀଳା ରତି କଲେ । ଅର୍ଦ୍ଧ ରଜନୀ ଅନ୍ତର ହୋଇଲେ ॥
ଭଉଣୀ ମୋତେ ପରଶଂସା କଲା । ତୁମ୍ଭ ସକାଶୁଁ ମନ ତୋଷ ହେଲା ୧

ଅଭିମନ୍ୟୁ ସାମନ୍ତ ସିଂହାର ଏହି ପ୍ରୀତିକୁ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଥିଲେ ମଧ୍ୟ ସ୍ଥଳ ବିଶେଷରେ ମଧ୍ୟ ତାହା ରୁଚି ବିରୁଦ୍ଧ ହୋଇ ଉଠିଛୁ ।

"ନାରୀରେ ନାରୀ ପୁରୁଷେ ପୁରୁଷ ।
ଭେଦ ହୀନ ପ୍ରୀତି ଦଶେ ନରସ ॥" ୨

ଏପରି ବର୍ଣ୍ଣନାରୁ ଯାହା ବୁଝିଲେ ମଧ୍ୟ ସହଜ ଅର୍ଥରେ ବୁଝିଲେ, ଏ ପରକୀୟ ପ୍ରେମ ମୂଳରେ ବଂଶ, ଜାତି, କୁଳ ଅଭିମାନ ଅତି ତୁଚ୍ଛ, ଅତି ହେୟ ହୋଇ ଉଠିଲା । ସାହିତ୍ୟିକ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ—

---

(୧) ଗୋପୀ ଭାଷା (ପ୍ରାଚୀ)—ଦିନେଇ ଦାସ-୧୧ ଛାନ୍ଦ
(୨) ବିଦଗ୍ଧ ଚିନ୍ତାମଣି—୪୨ ଛାନ୍ଦ-ଅଭିମନ୍ୟୁ ସାମନ୍ତ ସିଂହାର

"ଯେଉଁ ଦୁଇ ଗୋଟି ଧାରା ବା ଆନ୍ଦୋଳନ, ମଧ୍ୟ ଯୁଗର ଆରମ୍ଭରୁ ଆଧୁନିକ କାଳ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟକୁ ପ୍ରଭାବିତ ତଥା ପ୍ରଣୋଦିତ କରି ଆସିଥିଲା, ତାହାର ଉତ୍ପତ୍ତିକାଳ, ଷୋଡ଼ଶ ଶତାବ୍ଦୀ ଓ ତାହା ହେଉଛି (୧) ଓଡ଼ିଶାରେ ଅବସ୍ଥାନ ଫଳରେ ଶୁଦ୍ଧାଭକ୍ତି ଓ ପ୍ରେମ ଭକ୍ତିର ପ୍ରବର୍ତ୍ତନ ଓ ସେହି ସୂତ୍ରରେ ଓଡ଼ିଆ ସାହିତ୍ୟରେ ବୈଷ୍ଣବଚର୍ଯ୍ୟା (୨) ପ୍ରେମ ଭକ୍ତିର ପ୍ଲାବନ ମଧ୍ୟରେ ପାରମ୍ପରିକ ଆଧ୍ୟାତ୍ମିକ ସାଧନା ତଥା ଭାବନାର ପ୍ରତିବାଦ ଓ ସେ ପ୍ରତିବାଦକୁ ପ୍ରତିଷ୍ଠିତ କରିବା ପାଇଁ, ଜ୍ଞାନମିଶ୍ରା ଭକ୍ତିର ପ୍ରଚାର।"
ବର୍ତ୍ତମାନ ଜ୍ଞାନମିଶ୍ରା ଭକ୍ତି ବିଷୟରେ ସାମାନ୍ୟ ଆଲୋକପାତ କଲେ ଜଣାଯାଏ ଯେ, ପ୍ରୀତି ବିରୁଦ୍ଧରେ ଜଗନ୍ନାଥ ଦାସ ନିଜର ସ୍ୱର ଭାଗବତରେ ଉତ୍ତୋଳନ କରିଥିଲେ । ଏକାଦଶ ସ୍କନ୍ଦରେ ରୂପକ କଥା ମାଧ୍ୟମରେ ସଂସାରୀକୁ ସତର୍କ କରାଇ ଦେଇ କହିଅଛନ୍ତି—

"ଅଧିକେ ସଂସାର ସଙ୍ଗତେ । ପୀରତି ନ କରିବ ଚିତ୍ତେ ॥
ଯେବେ କରିବ ସ୍ନେହ ଆଶ । କପୋତ ପ୍ରାୟେ ହିବ ନାଶ ॥"

ଯେତେ ଦୂର ମନେ ହୁଏ ଉପେନ୍ଦ୍ର ଏହି ଉଭୟ ଧର୍ମ ବିରୁଦ୍ଧରେ ପ୍ରତିବାଦ ସ୍ୱୀୟ କାବ୍ୟ କୃତିରେ ବାଢ଼ି ବସିଛନ୍ତି । ଏବେକତ ଦିନେଇ ଦାସଙ୍କ ପରି ଶ୍ରୀକୃଷ୍ଣଙ୍କ ସହଜିଆ ପ୍ରେମ ଓ ଭାଗବତକାରଙ୍କ କପୋତ-କପୋତୀ ପକ୍ଷୀର ପ୍ରୀତିକୁ ସେ ବହୁବାର ବିରୋଧ କରି ଆସିଛନ୍ତି ।

---

(୧) (୨) ଓଡ଼ିଆ ସାହିତ୍ୟର ମଧ୍ୟ ପର୍ବ-ପୃଷ୍ଠା-୧୬୦— ସୁରେନ୍ଦ୍ର ମହାନ୍ତି ।

ଗୌଡ଼ୀୟ ବୈଷ୍ଣବ ଧର୍ମରେ ଗୋପୀ ଭାବ ପ୍ରାଧାନ୍ୟ ଲାଭ କରିଛି । କିନ୍ତୁ ସେହି ଗୋପୀ ଭାବକୁ ଉପେନ୍ଦ୍ର କିପରି ପରିତ୍ୟାଗ କରିଛନ୍ତି, "କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ" କାବ୍ୟ ମଧ୍ୟରେ ତାହା ଦେଖିବାର କଥା ।

ସହଚରୀମାନେ ମଧୁଶଯ୍ୟା ସଦନକୁ ସୁସଜ୍ଜିତ ଏପରି କଲେ ଯେ, ଯହିଁରେ ନବାଙ୍ଗନର ହିତ ପାଇଁ ଯୁବାର ପ୍ରମୋଦ ଉଦୟ ହେବ । ସେହି ପୁରରେ ସେମାନେ ସୀତା ଓ ରାମଙ୍କ ମଧୁଶଯ୍ୟା ଓ ସେଠାରେ ଥିବା ପ୍ରଦୀପ ଆଦି ନମୂନ ଲେଖିଲେ ସିନା ଗୋପୀ କୃଷ୍ଣଙ୍କର ଲୀଳା ଚିତ୍ର ନୁହେଁ । ଉପେନ୍ଦ୍ରଙ୍କ ଭାଷାରେ:—

"ଗୋପୀ କୃଷ୍ଣ ଲୀଳା ଚିତ୍ର ନାହିଁ ଯହିଁ ଦେଖା
ସୀତା ରାମ ପ୍ରଦୀପ ନମୂନ ଆଦି ଲେଖା ଯେ ।" ୧

ଏଥିରୁ ଅତି ସ୍ପଷ୍ଟ ହୁଏ ଯେ, ଗୋପୀଭାବର ସହଜିଆ ତତ୍ତ୍ୱ ବା ପରକୀୟା ପ୍ରୀତିକୁ ଉପେନ୍ଦ୍ର ସାମାଜିକ ସ୍ୱୀକୃତି ଦେବାକୁ ଚାହିଁ ନାହାନ୍ତି । ବରଂ ଏକନିଷ୍ଠ ଦାମ୍ପତ୍ୟ ପ୍ରେମର ପ୍ରତୀକ ପ୍ରତୀକ ରାମ-ସୀତାଙ୍କର ଚିତ୍ର ଦେଇ ଦମ୍ପତିଙ୍କ ମନ ଉପରେ ତାହାର ପ୍ରଭାବ ପକାଇବାକୁ ସଚେଷ୍ଟ ହୋଇଛନ୍ତି । ଉପେନ୍ଦ୍ର ଏଠାରେ ମନସ୍ତତ୍ତ୍ୱଙ୍କ ଭାବରେ ସ୍ୱକୀୟା ପ୍ରେମର ନିଷ୍ଠା ପ୍ରତିଷ୍ଠା କରିବାକୁ ଚାହିଁ ନାହାନ୍ତି କି ? ପୁନଶ୍ଚ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ କବି ଉପେନ୍ଦ୍ର ବ୍ରଜ-ଲୀଳାର ସୂଚନା ଦେଇ ଅଛନ୍ତି । ମାତ୍ର ଏ ବ୍ରଜ ଲୀଳା ସେ ବ୍ରଜ ଲୀଳା ଅନୁରୂପ ନୁହେଁ । ଏହାର କୁଞ୍ଜରେ ଲଳିତା, ବିଶାଖା, ଇନ୍ଦୁରେଖା, ଚିତ୍ରା, ସୁଦେବୀ, ତୁଙ୍ଗବିଦ୍ୟା, ରଙ୍ଗଦେବୀ ଓ ଚମ୍ପକ ଲତା ପ୍ରଭୃତି ଅଛନ୍ତି ।

---

୧—କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ-୩୪ ଛାନ୍ଦ

ଉପେନ୍ଦ୍ରଙ୍କ ଭାଷାରେ:—

"ଶୁଣରେ ରୁଚି ରାଧିକା ଚନ୍ଦ୍ରାବଳୀ ବିରାଜିତ ଅନୁପମରେ ।
କୁଞ୍ଜରେ ଲଳିତା ବିଶାଖା ଶୋଭିତ ଇନ୍ଦୁରେଖା ଚିତ୍ରା ରମ୍ୟରେ ।
ଅଛୁ ସୁଦେବୀ । ପୁଣି ତୁଙ୍ଗବିଦ୍ୟା ନିପୁଣେ ।
ଭାବନ୍ତୁ ରଙ୍ଗଦେବୀ ଚମ୍ପକଲତା ମଧୁସୂଦନର ଭ୍ରମଣେ ।
ମଞ୍ଜରୀ-ବାର ସେବିତ ନିରନ୍ତର ଅଶେଷ ଗୋପରେ ସେ ଶୋଭେ ।
ମଦନ ତହିଁ ମୂର୍ତ୍ତିମନ୍ତ ହୋଇଛୁ ଦଇବେ ବେଣୁ ଧ୍ୱନି ଶୁଭେ ।
ଆନ୍ତ ପ୍ରବେଶ । ସୁମନ ସୁଦାମ ହୋଇବ ।
କିଙ୍କିଣୀ ପ୍ରବଳବଳ ହୋଇକରି ନାନା ବିଳାସ ପ୍ରକଟିବ ।" ୧

ଏଠାରେ ରୁଚିରାଧିକା (ଅତି ସୁନ୍ଦର), ଚନ୍ଦ୍ରବଳୀ (ଚନ୍ଦନ ବୃକ୍ଷ), ଇନ୍ଦୁରେଖା (ସୋମଲତା), ଚିତ୍ରା (ଚିତା ବୃକ୍ଷ), ସୁଦେବୀ (ଫିଚିକଣା ବୃକ୍ଷ), ତୁଙ୍ଗ (ପୁନ୍ନାଗ ବୃକ୍ଷ), ବିଦ୍ୟା (ଅପରାଜିତା), ରଙ୍ଗ ଦେବୀ (ଗଙ୍ଗଶିଉଳୀ), ମଧୁସୂଦନ (ଭ୍ରମର) ମଞ୍ଜରୀ ବାର (ଲତାସମୂହ), ଗୋପୀ (କୁଆମଇତା), ମଦନ (ଧାତୁରୀ ବୃକ୍ଷ), ମୂର୍ତ୍ତିମାନ୍ ବେଣୁ (ରନ୍ଧ୍ରଯୁକ୍ତ ବାଉଁଶ), ସୁଦାମ (ପୁଷ୍ପର ସୁନ୍ଦରମାଳ) ପ୍ରଭୃତି ଶବ୍ଦକୁ ସେ ବୃକ୍ଷ-ଲତା-ପୁଷ୍ପ ଅର୍ଥରେ ଗ୍ରହଣ କରି ଗୋପ-ଲୀଳାର ଗୌଣତ୍ୱ ସ୍ୱୀକାର କରିଅଛନ୍ତି । ଅନ୍ୟ ଭାଷାରେ କହିବାକୁ ଗଲେ ପରକୀୟା ପ୍ରେମର ପ୍ରତୀକ ଗୋପୀ ଭାବ ବା ମଞ୍ଜରୀ ଭାବକୁ ଉପେନ୍ଦ୍ର ଏଠାରେ ସ୍ୱୀକାର କରି ନେଇ ନାହାନ୍ତି ।

ସୁଭଦ୍ରା-ପରିଣୟ କାବ୍ୟରେ ପ୍ରେମବିରାଗୀ ଅର୍ଜ୍ଜୁନଙ୍କ ମନ ସୁଭଦ୍ରାଙ୍କ ପ୍ରତି ପ୍ରେମ-ସରାଗୀ କରାଇବା ନିମନ୍ତେ ସେ ସତ୍ୟବତୀ—

---

୧—କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ-୧୦ ଛାନ୍ଦ

ପରାଶର, ଅଞ୍ଜନା-ପବନ, ବିଶ୍ୱାମିତ୍ର-ମେନକା, ଅହଲ୍ୟା-ଗୌତମ, ଶ୍ରୀକୃଷ୍ଣ-ରାଧାଙ୍କ ଓ ତାରକା ଋଷ୍ୟଶୃଙ୍ଗଙ୍କ ଯୌନ ମିଳନ ଚିତ୍ର ଅଙ୍କିଛନ୍ତି ।

ଏଠାରେ ମନସ୍ତାତ୍ତ୍ୱିକ ଏବଂ କାମ ଶାସ୍ତ୍ରର ଗଭୀର ଜ୍ଞାନ ଲାଭ କରିଥିବା ଉପେନ୍ଦ୍ର, ସୁଭଦ୍ରାଙ୍କ ପ୍ରତି ପ୍ରେମ-ଆକୃଷ୍ଟ ହୋଇଥିବା ଅର୍ଜୁନଙ୍କ ମନରେ କାମୋଦ୍ରେକ କରିବା ନିମନ୍ତେ, କୃଷ୍ଣଙ୍କର ରାଧାଙ୍କୁ ଯମୁନା ଜଳରେ ପ୍ରେମ ଭିକ୍ଷାର ଚିତ୍ର ଦେଇ ନାହାଁନ୍ତି କି ? ଅର୍ଥାତ୍ କାମ ଶାସ୍ତ୍ରର ନିୟମାନୁସାରେ ଗୋପୀ-ଭାବ ଏକ କାମୋଦ୍ଦୀପକ (Aphrodisiac) ଭାବେ ଗ୍ରହଣ କରାଯାଇଛି ସିନା, ପରକୀୟା ଅର୍ଥରେ ନୁହେଁ ।

ଏହିପରି ଭାବରେ ଦେଖିବାକୁ ଗଲେ, ଉପେନ୍ଦ୍ର ଭଞ୍ଜ ଲାବଣ୍ୟବତୀ, ବୈଦେହୀଶ-ବିଳାସ କାବ୍ୟମାନଙ୍କରେ ପରକୀୟା ପ୍ରୀତିର ଓ ଶରୀରଭାବର ବିରୋଧ କରିଛନ୍ତି । ସୂର୍ପଣଖା ଯେତେବେଳେ ମନରେ—

"ବେଶ୍ୟା ସଙ୍ଗତ ହୋଇଲେ ରସିକ ପୁଂସ ।
ବଳାଇ କି ସ୍ୱକୀୟାରେ ସେ ଅଭିଳାଷ ॥" (୧) ଭାବ

ନେଇ ରାମଚନ୍ଦ୍ରଙ୍କୁ ପ୍ରେମ ଭିକ୍ଷା କରିଛି, ଏବଂ "ଯୋଗୀ ଯୋଗ" ଭଙ୍ଗର ଗୃହୀଣୀ ରାମଚନ୍ଦ୍ରଙ୍କ ପ୍ରତି ତାଳି ଦେଇଛି, ସେତେବେଳେ ରାମଚନ୍ଦ୍ର କହି ଅଛନ୍ତି:—

"ବ୍ରତ ଆଚରଣ ଏକ ପତ୍ନୀ ମୋହର" (୨)
ମିଥିଳା ନବ ସଙ୍ଗମ        କାଳେ ସେ କଲେ ନିୟମ
ଏକ ପତି ଏକ ପତ୍ନୀ ବ୍ରତ ।

---

(୧) ଓ (୨) ବୈଦେହୀଶ ବିଳାସ—୨୩ ଛାନ୍ଦ

ଜଗତେ ସେହୁ ଦମ୍ପତି ସାଧୁଙ୍କ ସୁଖ ସମ୍ପତ୍ତି
ମଧୁର ଆକୃତି ଆଲୋକିତ ସେ । (ଲାବଣ୍ୟବତୀ ୩୮ ଛାନ୍ଦ)

ପୁଣି କାମାତୁରା ସୂର୍ପଣଖା ଯେତେବେଳେ ତାଙ୍କୁ ବାର ବାର ଅନୁରୋଧ କରୁଛି ସେତେବେଳେ ଉପେନ୍ଦ୍ର ଭଞ୍ଜ ଏକନିଷ୍ଠ ପ୍ରେମର ସମ୍ୟକ୍ ସୂଚନା ଦେଇ ରାମଚନ୍ଦ୍ରଙ୍କ ମୁଖରେ ଫୁଟାଇଛନ୍ତି—

"ବିଷ୍ଣୁପଦୀ ଜଳ କେଡ଼େ ନିର୍ମଳ ଯୋଷା
ବାରିଦ ଆବିଳ ଜଳେ ଗୃତକ ଆଶା ।" (୧)

ଏହି ଉଦାହରଣ "ଭାତ ହାଣ୍ଡିରୁ ଗୋଟିଏ ଚିପିବା ନ୍ୟାୟରେ ଯଥେଷ୍ଟ । ପ୍ରେମ-ସୁଧାନିଧି, ରସିକ ହାରାବଳୀ ଓ ରସଲେଖା କାବ୍ୟରେ ଏହାର ଭୂରି ଭୂରି ପ୍ରମାଣ ମିଳେ । ଉପେନ୍ଦ୍ର ପରକୀୟା ପ୍ରେମକୁ ସ୍ୱୀକାର କରି ନାହାଁନ୍ତି । ବରଂ ପରସ୍ତ୍ରୀକୁ ସେ "ମାତୃବତ୍" ମନେକରି ଗାଇ ଉଠିଛନ୍ତି:—

"ପର ଦ୍ରବ୍ୟ ପରସ୍ତ୍ରୀ ହରଣକୁ
ଲୋଡ଼ୁଁ ଶୁଭକରି ତହୁଁ ମରଣକୁ ।" (୨)

ଏହା ବ୍ୟକ୍ତିତ ବିରହର ଉପରେ ଯାହା ପରକୀୟା ପ୍ରୀତିରେ ପ୍ରାଧାନ୍ୟ ଲାଭ କରିଛି; ରସ କଲ୍ଲୋଳକାର ଦୀନକୃଷ୍ଣ ଦାସ ଏହାର ଚିତ୍ର ଦେବାକୁ ଯାଇ ଗୋପୀମାନଙ୍କର ବିରହ ପ୍ରସଙ୍ଗରେ ଉଲ୍ଲେଖ କରିଅଛନ୍ତି:—

---

(୧) ବୈଦେହୀଶ ବିଳାସ—୨୩ ଛାନ୍ଦ

(୨) ଲାବଣ୍ୟବତୀ—୭ମ ଛାନ୍ଦ

"କୋମଳ ପତ୍ର ହୋଇଛୁ କଣ୍ଟକ । କେ କେତେ ଅବା ଆଶ୍ରୁଅଛୁ ଲୋକ ॥
କାହାର ମାନକେ । କମଳ ପତ୍ର ଅବା ପାଇବ କେ ॥
କୁସ୍ଥିତ ଦ୍ରବ୍ୟ ଗନ୍ଧଚେଷ୍ଟାମୂଳ । କର୍ମକୁ ସେହି ହୋଇଛୁ ଦୁର୍ମିଳ ॥ ୧

ପୁନଶ୍ଚ ଏହି ଉପଚାରର ବିଫଳତା ଉପରେ କହିବାକୁ ଯାଇ ନନ୍ଦ କିଶୋର ଲେଖିଛନ୍ତି—

"କି ହେବ ଉଶୀରେ ଶତଦଳ ଦଳେ
ସୁରଭି ମଳୟ ନଳେ
ବାହ୍ୟ ଉପଚାର ଅନ୍ତର ସନ୍ତାପ
ହଟଇ କି କେବେ ତଳେ" ? (୨)

ମନେ ହୁଏ ବିରହୀର ଏହି ବାହ୍ୟ ଉପଚାରର ତୁଚ୍ଛତା ପ୍ରତିପାଦନ କରି ଉପେନ୍ଦ୍ର ଗାଇଉଠିଛନ୍ତି:—

(କ) ବିରହୀକୁ ଉପଚାର ମାତ୍ର ମନୋହାରୀ ।
ପଲ୍ଲବ ଶଯ୍ୟାଦି ଯେତେ ବିଅର୍ଥରେ କରି ଯେ ॥ (୩)

(ଖ) ସବୁ ଉପଚାର ଏହି ପ୍ରକାରେ ବ୍ୟର୍ଥ ।
ଏ ତାପ ନାଶନେ ଏକା ବୀର ସମର୍ଥ ॥

(ଗ) କର୍ପୂର ଚନ୍ଦନ କେ ଗୋଳୁଛୁ କେ ଛଳୁଛୁ ।
ସ୍ଫୋଟକ ଜନ୍ମିବ ଏଥୁ ଏବେ ହୋଇ କିଛୁ ଗୋ ॥

---

(୧) ରସକଲ୍ଲୋଳ—୩୨ ଛାନ୍ଦ - ଧୀନକୃଷ୍ଣ ଦାସ

(୨) ଶର୍ମିଷ୍ଠା—୪ର୍ଥ ସର୍ଗ—ନନ୍ଦକିଶୋର ବଳ

(୩) (କ) ପ୍ରେମ ସୁଧା ନିଧି—୧୪ ଛାନ୍ଦ
(ଖ) ଲାବଣ୍ୟବତୀ——୧୬ ଛାନ୍ଦ
(ଗ) ଲାବଣ୍ୟବତୀ——୪୬ ଛାନ୍ଦ

ଏହିପରି ଭାବରେ ଆଲୋଚନା କଲେ ଜଣାଯାଏ ଯେ ଚୈତନ୍ୟ ଯେପରି ଗାଇ ଉଠିଛନ୍ତି:—

"ନ ଧନଂ ନ ଜନଂ ନ ସୁନ୍ଦରୀଂ କବିତମ୍ବା ଜଗଦୀଶ କାମୟେ ।
ମମଜନ୍ମନି ଜନ୍ମନୀଶ୍ୱରେ ଭବତାଦ୍ଭକ୍ତିରହୈତୁକୀ ତ୍ୱୟି ॥
(ଚୈତନ୍ୟ ଚରିତାମୃତ)"

ସେତେବେଳେ ଉପେନ୍ଦ୍ର ଭଞ୍ଜ ଗାଇ ଉଠିଛନ୍ତି:—

"ଯେତେ ଜନ୍ମେ ଯେତେ ପୁଣ୍ୟ କରିଛି ମୁଁ ଠୁଳେ ।
ମିଳିଥିବଟି ସୁନ୍ଦରୀ ମେଳ ହେବା କାଳେ ଯେ ॥" (୧)

ମୋଟ ଉପରେ କହିବାକୁ ଗଲେ ଉପେନ୍ଦ୍ର ଭଞ୍ଜ ଗୌଡ଼ୀୟ ବୈଷ୍ଣବ ପ୍ରବର୍ତ୍ତିତ ପରକୀୟା ପ୍ରେମ-ତତ୍ତ୍ୱର ମୌନ ପ୍ରତିବାଦ କରିଛନ୍ତି । ରାଧାକୃଷ୍ଣ ପ୍ରେମ ଅପେକ୍ଷା ରାମ-ସୀତାଙ୍କ ଦାମ୍ପତ୍ୟ ପ୍ରେମର ନିଷ୍ଠାକୁ, ବରଂ ସେ ସାମାଜିକ ସ୍ୱୀକୃତି ଦେଇଛନ୍ତି । ସ୍ଥୂଳତଃ ରାଜକୀୟ ଅନୁମୋଦନ ପାଇ ଯେଉଁ ଧର୍ମ ସାହିତ୍ୟ ମାଧ୍ୟମରେ ପ୍ରବୃତ୍ତିଧର୍ମୀ ହୋଇ ସମାଜକୁ ଗ୍ରାସ କରିବାକୁ ବସିଛି, ସେହି ସମାଜକୁ ରକ୍ଷା କରିବାକୁ ଯାଇ ଉପେନ୍ଦ୍ର ଭଞ୍ଜ ସାହିତ୍ୟ-ମାଧ୍ୟମରେ ନିଜର ସ୍ୱର ଉତ୍ତୋଳନ କରିଅଛନ୍ତି । ପ୍ରଚଳିତ ପରକୀୟା ପ୍ରେମ, ଅଶ୍ଳୀଳତାକୁ ଆଶ୍ରୟ କରି ଗଢ଼ି ଉଠିଥିବା ବେଳେ; ଦାମ୍ପତ୍ୟ ପ୍ରେମ ପ୍ରତି ଲୋକଙ୍କ ମନକୁ ଆକୃଷ୍ଟ କରି ସଂସାର ଧର୍ମ ରକ୍ଷା କରିବାରେ ବ୍ରତୀ ହୋଇଛନ୍ତି । ମୋର ମନେହୁଏ, ଏହି ଅନ୍ତଃସ୍ରୋତଟି ସତେ ଯେପରି ଉପେନ୍ଦ୍ର କାବ୍ୟ-କୃତିରେ ଅଧିକ ସ୍ପଷ୍ଟ ଓ ଅଧିକ ଜୀବନ୍ତ ହୋଇଉଠିଛି । ଏଣୁ ଉପେନ୍ଦ୍ର ଭଞ୍ଜ ବାରମ୍ବାର ସ୍ୱକୀୟା ପ୍ରୀତିର ଜୟଗାନ କରି ଗାଇ ଉଠିଛନ୍ତି:—

(୧) ଲାବଣ୍ୟବତୀ—୪୬ ଛାନ୍ଦ

"ସ୍ତିରୀ ପୁରୁଷ ଅନୁରାଗୁଁ ଅଧିକ କ ହେବ

(ଲାବଣ୍ୟବତୀ—୩୧ ଛାନ୍ଦ)

ସ୍ୱର୍ଗୀ ହୋଇଥିବ ଭୂପ- ଉପଜାଗ ଯେହ୍ନ ।
ବଦ୍ୟାଥିବ ଦବ୍ୟସ୍ତିରୀ ମିଳଥିବ ତହିଁ ଯେ ।
କ ହେବ ଇନ୍ଦ୍ର ହୋଇଲେ ସବ ସମ୍ପଦେ ସେ ।
ସ୍ତିରୀନାଠରୁ ପାପୀ ନାହିଁ ମର୍ତ୍ତ୍ୟ ଦେଶେ ଯେ ।

(ଲାବଣ୍ୟବତୀ—୨୮ ଛାନ୍ଦ)

କ ବଡ଼ ହେବ ନୃପତ୍ତି, କ ବଡ଼ ଇନ୍ଦ୍ର ସମ୍ପତ୍ତି,
ସବୁ ସୁଖ ଉତ୍ପତ୍ତି ସ୍ଥାନ ଦମ୍ପତ୍ତି ।"

(ପ୍ରେମ ସୁଧାନଧି—୭ମ ଛାନ୍ଦ)

ବର୍ତ୍ତମାନ ଭାଗବତକାରଙ୍କ କପୋତ ପକ୍ଷୀର ପ୍ରୀତିର ବଚୋଂ ଉପେନ୍ଦ୍ର କପର କରଛନ୍ତି ତାହା ଦେଖିବାର କଥା । ଭାଗବତକାର ଅଧିକ ସଂସାର ସହିତ ପ୍ରୀତି କରିବାକୁ ଅର୍ଥାତ୍ ଦାମ୍ପତ୍ୟ ପ୍ରୀତିର ବାରଣ କଲାବେଳକୁ ଉପେନ୍ଦ୍ର ଗାଇ ଉଠିଛନ୍ତି:—

[କ] ରତିରୁ ହତ, ପକ୍ଷୀ କପୋତ, ରହୁ ତାର ପରି ମୋର ଚରିତ । (ରସପଞ୍ଚକ]

[ଖ] ସ୍ନେହାନୁବନ୍ଧେ ପକ୍ଷୀ ବେନ ବନାଶ ଆଜ ଧନ୍ୟ ବାଣୀ ଶୁଭଇ । [ଶୁଭଦ୍ରା ପରିଣୟ—୧୦ ଛାନ୍ଦ]

[ଗ] ମନେ କରଅଛୁ ପଙ୍କଜାକ୍ଷୀ । ମଲ ପ୍ରୀତିରେ କପୋତ ପକ୍ଷୀ ଯେ । [ଲାବଣ୍ୟବତୀ—୨୦ ଛାନ୍ଦ]

[ଘ] ପ୍ରୀତିରେ ପକ୍ଷୀ ମଲ ପ୍ରୀତିରେ ଦ୍ରବେ ଶିଳା ।

[ରସଲେଖା—୧୯ ଛାନ୍ଦ]

ଏଥିରୁ ସ୍ପଷ୍ଟ ହୁଏ ଯେ, ଉପେନ୍ଦ୍ର ଭଞ୍ଜ କପୋତ ଓ କପୋତୀଙ୍କର ଦାମ୍ପତ୍ୟ ପ୍ରେମକୁ ସ୍ୱୀକାର କରନେଇଛନ୍ତି । ତାହା ନୋହିଥିଲେ, ସେମାନଙ୍କର ପ୍ରେମକୁ ବାରମ୍ବାର ସ୍ୱୀୟ କାବ୍ୟକୃତିରେ କାହିଁକି ଉଲ୍ଲେଖ କରିଥାନ୍ତେ ।

ଏତକ ନୁହେଁ, (୧) ଦଣ୍ଡକାରଣ୍ୟର ଋଷିମାନେ ବ୍ରହ୍ମଜ୍ଞାନକୁ ତୁଚ୍ଛକରି ଯେଉଁ କାମୁକତା ଓ ଶଖୀ-ଭାବ ପ୍ରଦର୍ଶନ କରିଛନ୍ତି, ରାମଚନ୍ଦ୍ର ତାହାର ପ୍ରତିବୋଧ କରିଅଛନ୍ତି । ଏଠାରେ ଉପେନ୍ଦ୍ର ମାନସ ସମ୍ୟକ୍ ପ୍ରତିବିମ୍ବିତ ହୋଇଛି କହିଲେ, ଅତି ରଞ୍ଜନର ଦୃଷ୍ଟି ଉଠେ କି ? ସେ ନାୟକ ନାୟିକାଙ୍କ ପ୍ରୀତିକୁ ଯୋଗୀର ବ୍ରହ୍ମଜ୍ଞାନ ସହିତ ଅଭିନ୍ନ କରି ନାହାନ୍ତି କି ? "ଏକ ଜୀବନ ଭିନ୍ନ ଦେହି" କହି ଦାମ୍ପତ୍ୟ ପ୍ରେମର ନିଷ୍ଠା ପ୍ରଚୁର ପ୍ରସାର କରିନାହାଁନ୍ତି କି ?

ସୁତରାଂ ଏହିପରି ଆଲୋଚନା କଲେ ଜଣାଯାଏ, ଉପେନ୍ଦ୍ରଙ୍କ ସମଗ୍ର କାବ୍ୟ କୃତିରେ ଏକପତ୍ନୀବ୍ରତ ଆଦର୍ଶରେ ସମାଜକୁ ପ୍ରଭାବିତ କରି ଉଭୟ ବୈଷ୍ଣବ ଧର୍ମଧାରା ବିରୁଦ୍ଧରେ ମୌନ ପ୍ରତିବାଦ ବାଢ଼ିଛନ୍ତି ।

---

୧) ବିଧାତା ଆମ୍ଭଙ୍କୁ କରନ୍ତା ନାରୀ । ବରି ହୁଅନ୍ତେ ଏ କୋଦଣ୍ଡଧାରୀ ॥
ବ୍ରହ୍ମ-ପଦବୀ ପାଇ ହେବ କିସ । ବହିବା କି ପରି କାମିନୀ ବେଶ ॥

[ବୈଦେହୀଶ ବିଳାସ – ୨୧ ଛାନ୍ଦ]

ସେ ଧ୍ୟାନ ବିନୁ ନାହିଁ ଆନ, ଋଷିରେ ଯଥା ବ୍ରହ୍ମଜ୍ଞାନ ।

[ରସଲେଖା—୧୯ ଛାନ୍ଦ]

ଯେପରି ସହଜିଆ ଧର୍ମ ପରବର୍ତ୍ତୀ କାଳରେ ଯୌନବ୍ୟଭିଚାର ମଧ୍ୟରେ ଘୋର ବିଡ଼ମ୍ବିତ ହୋଇ ପଡ଼ିବାରୁ, ତାର ପ୍ରତିକ୍ରିୟା ସ୍ୱରୂପ ଗୌଡ଼ରେ ବ୍ରାହ୍ମଣୀ ଧର୍ମର ଅଭ୍ୟୁଦୟ ଘଟିଥିଲା । (୧) ସେହିପରି ଏକ ପକ୍ଷରେ ଉତ୍କଳରେ ପ୍ରତାପରୁଦ୍ରଙ୍କ ଦ୍ୱାରା ଅନୁମୋଦିତ ସହଜିଆ ବୈଷ୍ଣବ ଧର୍ମ ଦର୍ଶନର, ପରକୀୟା ପ୍ରେମତତ୍ତ୍ୱ ଓ ଅପର ପକ୍ଷରେ ସଂସାର ବିରାଗୀ ବ୍ରହ୍ମଜ୍ଞାନୀ ଯୋଗୀ ପଞ୍ଚସଖା ପ୍ରବର୍ତ୍ତିତ ଶୁଷ୍କ ବୈରାଗ୍ୟ ବିରୁଦ୍ଧରେ ଉପେନ୍ଦ୍ର ଭଞ୍ଜ ଏକ ନୀରବ ପ୍ରତିବାଦ ସାହିତ୍ୟ ମାଧ୍ୟମରେ ହିଁ ଉଠାଇଥିଲେ । ସୁସ୍ଥ ଦାମ୍ପତ୍ୟ ଜୀବନ ପ୍ରତିଷ୍ଠାରେ ସାରସ୍ୱତ ପାରିବାରିକ ଜୀବନକୁ ଦିବ୍ୟ, ନିର୍ମଳ, ପବିତ୍ର ଓ ପୂତ କରିବାର ପ୍ରୟାସ କରିଥିଲେ । ଏ ଉଭୟ ଧର୍ମ ଦର୍ଶନରୁ ସେ ନିଜକୁ ଦୂରେଇ ନେବାକୁ ଗୃହୀ ଥିଲେ କୁ ଥର ଗାଇ ଉଠିଥିଲେ:—

"ମୁଁ ସଂସାରୀ ପାଶୋର ପାରିବକି କଶୋରୀ
ଅଛୁ ମୋ କେଉଁ ଦମ୍ପତ୍ତି ହେ ।" (୧୮)
(ରସଲେଖା—୧୯ ଛାନ୍ଦ)

---

(୧) "ଚୈତନ୍ୟଙ୍କ 'ପ୍ରେମ ଧର୍ମ' ସାହଜିକ ବା ସହଜିଆ ଧର୍ମ ହୋଇଥିଲେ ହେଁ, ଚୈତନ୍ୟ ସେଥିରେ ଏକ ଉଲ୍ଲେଖଯୋଗ୍ୟ ବ୍ୟତିକ୍ରମ ଆଣିଥିଲେ । ସହଜ ଓ ବାମାଚାରୀ ତନ୍ତ୍ର ସାଧନା ପ୍ରଭୃତିରେ ନର ନାରୀଙ୍କ ଗୁହ୍ୟ-ମିଳନ ପରବର୍ତ୍ତୀ କାଳରେ ଯୌନବ୍ୟଭିଚାର ମଧ୍ୟରେ ଘୋର ବିଡ଼ମ୍ବିତ ହୋଇଥିଲା । ଗୌଡ଼ର ପାଳରାଜବଂଶର ଶେଷ ଆଡ଼କୁ ଏ ବିଡ଼ମ୍ବନାରେ ସମାଜ ଓ ସାଧନା ଘୋର ପର୍ଯ୍ୟୁଦସ୍ତ ହୋଇ ପଡ଼ିଥିଲା । ସେଥି ପାଇଁ ପରବର୍ତ୍ତୀ ସେନ୍ ରାଜବଂଶ କାଳରେ ଏହାର ଏକ ପ୍ରତିକ୍ରିୟା ରୂପେ ବ୍ରାହ୍ମଣ ଧର୍ମର ଅଭ୍ୟୁଦୟ ଘଟିଥିଲା ।

ଓଡ଼ିଆ ସାହିତ୍ୟର ମଧ୍ୟ ପର୍ବ-ସୁରେନ୍ଦ୍ର ମହାନ୍ତି

ସଂସାର ବିରାଗୀ ସନ୍ନ୍ୟାସୀମାନଙ୍କୁ ପାଷାଣ ରୂପେ ପ୍ରତିପାଦିତ କରି କହିଅଛନ୍ତି:—

"ତୁମ୍ଭେମାନେ ହେଲେ ବଶ ଏ ରସେ
ଯେଣୁ ପାଷାଣ ସେ ଏଥି ନ ରସେ ।"

(ରସିକ ହାରାବଳୀ-୪ର୍ଥ ଛାନ୍ଦ)

ଏହା କଣ ସମାଜ ଉପେନ୍ଦ୍ରଙ୍କର ଜୀବନ ଦର୍ଶନ ନୁହେଁ କି ? ଏହି ଆତ୍ମମୁଖ୍ୟ ନେଇ ଉପେନ୍ଦ୍ର ସ୍ୱଧର୍ମର ସୀମା ଭିତରେ ଓ କାମ ଶାସ୍ତ୍ରର ନିୟମାନୁସାରେ ସ୍ୱକୀୟ ନାୟକ ଓ ସ୍ୱକୀୟା ନାୟିକାର ମିଳନ ଘଟାଇଛନ୍ତି । ହବା ରତିକୁ ବାରଣ କରି ଗାଇ ଉଠିଛନ୍ତି:—

"ବାଳିକା ପାଶରେ ଥାଉଁ ଥାଉଁ
ତା ମୁଖ ପଦ୍ମକୁ ଚୁମ୍ବୁଁ ଚୁମ୍ବୁଁ

ଯେଉଁ ପୁରୁଷ ପ୍ରାଣତ୍ୟାଗ କରିଛି ତା ସମ ସୁକୃତ କାହିଁ ଆଉ ?"

(ରସିକ ହାରାବଳୀ-୮ ଛାନ୍ଦ)

ଏଣୁ ଉପେନ୍ଦ୍ର ଯୌନ ବ୍ୟଭିଚାରକୁ ରୋକିବା ନିମନ୍ତେ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ବୈଷ୍ଣବ ଧର୍ମର ଜଟିଳ ଦୁର୍ବୋଧ୍ୟ ଦର୍ଶନତତ୍ତ୍ୱ ଯାହାକି ମନର, ହୃଦର ନୁହେଁ ତାହା ବିରୁଦ୍ଧରେ ମଧ୍ୟ ମୌନ ପ୍ରତିବାଦ ବାଢିଥିଲେ । ସ୍ଥୂଳତଃ କହିବାକୁ ଗଲେ ସମାଜ

ଉପେନ୍ଦ୍ର ଭଞ୍ଜ ଏକ ପଳାୟନପନ୍ଥୀ ନଥିଲେ । ଏହି ସଂସାର ମଧ୍ୟରେ ରହି ଅନାବିଳ ଦାମ୍ପତ୍ୟ ପ୍ରେମ ସେ ଜୀବନର ବ୍ରତ କରି ନେଇଥିଲେ । ପରକୀୟା ପ୍ରେମର ସର୍ବଗ୍ରାସୀ କବଳରୁ ରକ୍ଷା କରି ଏକ ସୁସ୍ଥ ସାମାଜିକ ପରମ୍ପରାରେ ପ୍ରୟାସୀ ହୋଇଥିଲେ ।

—:o:—

# ବହୁ ଶାସ୍ତ୍ରଦର୍ଶୀ ଉପେନ୍ଦ୍ର

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଏକ ଆକସ୍ମିକ ସୃଷ୍ଟି ନୁହଁନ୍ତି । ତାଙ୍କ ପଛରେ ପୂର୍ବ କବିମାନଙ୍କର ପ୍ରଭାବ, ପରିପାର୍ଶ୍ୱ ପରିବେଷ୍ଟନୀ, ଶିକ୍ଷା, ଦୀକ୍ଷା, ସାମାଜିକ ରୀତି ନୀତିର ପ୍ରଭାବ ନିଶ୍ଚୟ ରହିଛି । ଓଡ଼ିଆ ଭାଷା ପ୍ରତି ଘୃଣାଭାବ ପରିପୋଷଣ କରୁଥିବା ସଂସ୍କୃତ ପଣ୍ଡିତଙ୍କର ଯୁଦ୍ଧଂ ଦେହି ଡାକରା ମଧ୍ୟ ଉପେନ୍ଦ୍ରଙ୍କୁ ବହୁ ଶାସ୍ତ୍ର ଅଧ୍ୟୟନ କରି ଓଡ଼ିଆ କାବ୍ୟ-ସାହିତ୍ୟକୁ ସଂସ୍କୃତର ସମକକ୍ଷ କରିବାରେ ଯଥେଷ୍ଟ ପ୍ରେରଣା, ଉତ୍ସାହ ଓ ଉଦ୍ଦୀପନା ଯୋଗାଇଛି । ଏ ସବୁ ପ୍ରେରଣାର ବଶବର୍ତ୍ତୀ ହୋଇ କବି ବହୁ ଶାସ୍ତ୍ର ଅଧ୍ୟୟନ କରିଛନ୍ତି । ସଂସ୍କୃତ ଓ ଓଡ଼ିଆ ସାହିତ୍ୟରୁ ଯଥେଷ୍ଟ ଆହରଣ କରି ଯୁଗ ରୁଚିକୁ ନେଇ ଓଡ଼ିଆ-ସାହିତ୍ୟରେ ତାର ଯଥାର୍ଥ ସମୀକରଣ କରି ବିରାଟ କାବ୍ୟ-ସୌଧ ନିର୍ମାଣ କରିଅଛନ୍ତି । ରସ, ରୀତି, ଧ୍ୱନି, ବ୍ୟଞ୍ଜନା, ଲକ୍ଷଣା ଓ ବିଭିନ୍ନ ଅଳଙ୍କାରରେ ତାହା ଦୀପ୍ତିମନ୍ତ ହୋଇଛି । ଯୁଗର ଗଡ୍ଡଳିକା ପ୍ରଭାବରେ ଭାସିଯାଇ ଗତାନୁଗତିକତାର ଅନୁସରଣରେ ସେ ଯେପରି କାବ୍ୟ ରାଜ୍ୟରେ ଇନ୍ଦ୍ରଧନୁର ବର୍ଣ୍ଣମହୋତ୍ସବ ସୃଷ୍ଟି କରିଛନ୍ତି; ସେଥିରେ ବିଶେଷ ନୂତନତା ନଥିଲେ ମଧ୍ୟ ବିଚିତ୍ରତା, ମୌଳିକତା ଯଥେଷ୍ଟ ରହିଛି । ଜଗବନ୍ଧୁ ସିଂହଙ୍କ ଭାଷାରେ:—

"ଉପେନ୍ଦ୍ର ଭଞ୍ଜ ଛାନ୍ଦ ଲେଖିବାରେ ବିଶେଷ କୌଶଳ ଦେଖାଇ ଅଛନ୍ତି । ସଂସ୍କୃତ ସାହିତ୍ୟ ଦର୍ପଣରେ ଯେତେ ପ୍ରକାର

ଅଳଙ୍କାର, ଛାନ୍ଦ, ଅନୁପ୍ରାସ ପ୍ରଭୃତିର ବ୍ୟବହାର ଥିବାର ଦେଖା-ଯାଏ ଭଞ୍ଜ ମହାଶୟ ସେ ସମସ୍ତ ଅନୁକରଣରେ ଓଡ଼ିଆ ଭାଷାର ଛାନ୍ଦମାନ ଲେଖିଛନ୍ତି । ଓଡ଼ିଆ ସାହିତ୍ୟ ପରି ଅନ୍ୟ କୌଣସି ପ୍ରାଦେଶିକ ଭାଷାରେ ଏପରି ଛାନ୍ଦ ଲେଖାଯାଇ ଥିବାର ଜଣାଯାଏ ନାହିଁ ।" (୧)

ବିଜୟ ଚନ୍ଦ୍ର ମଜୁମଦାର "ଭଞ୍ଜ ସାହିତ୍ୟରେ ବର୍ଣ୍ଣନା ବୈଚିତ୍ର୍ୟ ନାହିଁ କେବଳ ଏକଦେଶଦର୍ଶୀ ବର୍ଣ୍ଣନା" ଅଛିବୋଲି ଯେଉଁ ମତ ଦେଇଛନ୍ତି, ତାହା ଭ୍ରାନ୍ତିମୂଳକ । ଯେଉଁମାନେ କହନ୍ତି ଉପେନ୍ଦ୍ର ଏକ ସୁଦକ୍ଷ ଶିଳ୍ପୀ, ମାତ୍ର ରସିକ କଳାକାର ନୁହଁନ୍ତି ସେମାନେ ମଧ୍ୟ ରସିକ କବି ଉପେନ୍ଦ୍ରଙ୍କର କାବ୍ୟ ନାୟିକାର ରସିକତାକୁ ସମ୍ୟକ୍ ଉପଲବ୍ଧି କରିବାରେ ଅସମର୍ଥ ହୋଇଛନ୍ତି । ଏପରି ବ୍ୟକ୍ତିଙ୍କୁ ଉପେନ୍ଦ୍ର ପ୍ରକୃତ ଜବାବ ଦେବାକୁ ଯାଇ ରସିକତା ବିଷୟରେ କହିଅଛନ୍ତି:—

"ଦେଶେ ଦେଶେ ହେଉ ଖ୍ୟାତ ମୋହ ଏ ରସିକ ଚିତ୍ତ
ହରିହର କରନ୍ତୁ ଏମନ୍ତ ହେ ।" (୨)

ଏଥିରୁ ଉପେନ୍ଦ୍ରଙ୍କର "ରସିକ" ଚିତ୍ତକୁ ଯେପରି ଗ୍ରହଣ କରୁ ସେହିପରି ବିଭିନ୍ନ କାବ୍ୟକୃତିରେ ଦେଇଥିବା ଶାସ୍ତ୍ରର ସୂଚନା ମାନଙ୍କରୁ ମଧ୍ୟ ଆମେ ଉପେନ୍ଦ୍ରଙ୍କର ସେହି ସେହି ଶାସ୍ତ୍ରରେ ପ୍ରବେଶ ଜ୍ଞାନ ଅଛି ବୋଲି ଧରିନେଉ । କାବ୍ୟ ଉଲ୍ଲିଖିତ କବିମାନଙ୍କ ଦ୍ୱାରା ସେ ଯେ ନିଶ୍ଚିତ ଭାବରେ ପ୍ରଭାବିତ, ଏ କଥା ତୁଳନାତ୍ମକ ବିଚାରରୁ ଆମେ ଜାଣିପାରୁ । ସେ ଯେଉଁ ବିରାଟ

(୧) ପ୍ରାଚୀନ ଉତ୍କଳ-ପ୍ରଥମ ସଂସ୍କରଣ-ପୃଷ୍ଠା ୧୬୭-ଜଗବନ୍ଧୁ ସିଂହ ।
(୨) ରସଲେଖା—୨୨ ଛାନ୍ଦ

ବ୍ୟକ୍ତିଭିଧାରୀ କବି ହୁଅନ୍ତୁ ନା କାହିଁକି, ପୂର୍ବଶୂରୀମାନଙ୍କ ଦ୍ୱାରା ସେ ପ୍ରଭାବିତ ହେବା ସ୍ୱାଭାବିକ ଓ ସୁନିଶ୍ଚିତ । Hudson ଏହାର ସପକ୍ଷରେ କହିବାକୁ ଯାଇ ଲେଖିଛନ୍ତି:—

> "Moreover, the strongest and most original men are deeply influenced by others, and carry traces of such influences in their style." (୧)

ବର୍ତ୍ତମାନ ଉଭୟ କାବ୍ୟରେ ସୂଚୀତ ଅଧୀତ, ଗ୍ରନ୍ଥମାନଙ୍କ ଦ୍ୱାରା ସେ କପରି ଭାବରେ ପ୍ରଭାବିତ ଦେଖାଯାଉ ।

(କ) "ବାଲ୍ମୀକି, ବ୍ୟାସ କବି ଯହିଁରେ ମହାକାବ୍ୟକେ ପୂରଣ କରେ
ମହାନାଟକ ବାତସୂତରେ ହେଲେ ରଚିତ ଯେ
ତହିଁଲେ ଜାବ୍ୟ ଯେ କାଳିଦାସେ ଚମ୍ପୂ ରଚନା ଭୋଜନରେଣେ
କୃପାସିନ୍ଧୁ ଏ ଗୀତ ପ୍ରକାଶେ ଗ୍ରନ୍ଥଲ ଚନ୍ଦ୍ର ଯେ,
ତବେକ ହିଁ ଉଦୟ ଏମନ୍ତ ଧ୍ୟାୟି ଯେ
ବ୍ୟୋମେ ତାରକା ଯେବେ ଟଳକୁ ଥାଇ ଯେ,
ତଦ୍ଭାବରେ ଜ୍ୟୋତିରିଙ୍ଗଣଗଣ ଜ୍ୟୋତିକ ଦେଖାନ୍ତି
ପୁଣ ସୁଜନେ ସାବଧାନରେ ଶୁଣ ଛାନ୍ଦ ରଚଇ ଯେ ।"
(ବୈଦେହୀଶ ବିଳାସ—୧ ଛାନ୍ଦ)

(ଖ) "କବି କଳ୍ପଲତା ମତେ ଏ ଭାବେ ।
ସାହିତ୍ୟ ରତ୍ନାକର ମାଘ କାବ୍ୟେ ॥
× × × × ×

---

(୧) An Introduction to English Literature

ଯାହା ବାଲ୍ମୀକେ କାଳଦାସେ ଖ୍ୟାତ ।
କବିଚନ୍ଦ୍ର ତାହା ରଚନେ ରତ ॥"
(ଶିବ କାବ୍ୟ ବଳୋଦୟ – ୧ ଗ୍ରନ୍ଥ)

(ଗ) ଏତ ପଦିକ୍ଷତ କାବ୍ୟ ଗ୍ରନ୍ଥ ପ୍ରାନ୍ତ ସତ ।
ଦୃଷ୍ଟ ଦୃଷ୍ଟାନ୍ତର ଏଥି ଅଛି ବିଶେଷତ ॥
ଯେସନ ନୈଷଧ ପଦ୍ୟେ ।
ଉପେନ୍ଦ୍ର କହେ ବୁଧ ପ୍ରମୋଦ କରାଏ ॥
(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ—୧୧।୩୧)

(ଘ) କହେ ଉପେନ୍ଦ୍ର ଭଞ୍ଜ ଉତ୍ତମ କବିପୁଞ୍ଜ
ଦୃଷ୍ଟିର ମାର୍ଗେ ମୋ ସଞ୍ଚାର ସେ ।
(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ—୧୩।୨୮)

(ଙ) ତରଣିକୁଳର ସାର । ଆଶ୍ରୟରୁ ନିରନ୍ତର
କହେ ଉପେନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ ସମୁଦ୍ର ପାର ॥
(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ୧୪।୩୮)

(ଚ) ଗୀତ ଅଭିଧାନ ହୋଇ ସାବଧାନ
ଶୁଣ ସୁଜନେ ସନ୍ତୋଷେ ।
ଅମର ତ୍ରିକାଣ୍ଡ ଯାଦବ ଶାଶ୍ବତ
ମେଦିନୀ ବିଶ୍ବପ୍ରକାଶେ
ପ୍ରଚୁର ଶବଦ ଯେତେ ତା କହିବି
ଗୁଢ଼ ଅପ୍ରଚୁର ମାନ
ବୁଝାଇଲେ ମୂର୍ଖେ ବୁଝିବେ ଅକ୍ଲେଶେ
ସ୍ମରିବେ କୋବିଦ ଜନ (ଗୀତାଭିଧାନ)

କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କର ବିଭିନ୍ନ କାବ୍ୟମାନଙ୍କର ଅଧୀତ ଶାସ୍ତ୍ରର ନାମୋଲ୍ଲେଖ ତାଙ୍କର ଅନାବିଳ, ନିଷ୍କପଟ ହୃଦୟର ସମ୍ୟକ୍ ପରିଚୟ ପ୍ରଦାନ କରେ ନାହିଁ କି ? ତାଙ୍କର ସ୍ୱୟଂ କାବ୍ୟ କୃତୀର ସ୍ୱୀକୃତିରୁ ପରିଜ୍ଞାତ ହୁଏ ଯେ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ବାଲ୍ମୀକି, ବ୍ୟାସଦେବ, କାଳିଦାସ, ଶ୍ରୀହର୍ଷ, ମାଘ, ହନୁମାନ ହେଉକି, ଭାରବୀ ପ୍ରଭୃତିଙ୍କର କାବ୍ୟ ଗ୍ରନ୍ଥରେ ପ୍ରବେଶ କରିଥିଲେ । ଅଧ୍ୟାପକ ଜୟକୃଷ୍ଣ ମିଶ୍ରଙ୍କ ଭାଷାରେ କହିବାକୁ ଗଲେ:—

"ରଘୁବଂଶ, କୁମାର ସମ୍ଭବ, ଅଭିଜ୍ଞାନ ଶକୁନ୍ତଳା, ନୈଷଧ-ଚରିତ, ଶିଶୁପାଳବଧ, ମହାନାଟକ, ମେଘଦୂତ, ଗୀତ ଗୋବିନ୍ଦ କାବ୍ୟ, କିରାତାର୍ଜ୍ଜୁନୀୟ, ଉତ୍ତର ରାମଚରିତ, ଋତୁ ସଂହାର, ମୃଚ୍ଛକଟିକ, ଶୃଙ୍ଗାରତିଳକ, ବାଲ୍ମୀକି ରାମାୟଣ, ଦଶ କୁମାର ଚରିତ, କାଦମ୍ବରୀ ପ୍ରଭୃତି ଅସଂଖ୍ୟ କାବ୍ୟ, ମହାକାବ୍ୟ, ପୁରାଣ ଓ ମହାପୁରାଣ ଗୁଡ଼ିକର ପୁଙ୍ଖାନୁପୁଙ୍ଖ ପଠନରେ ଅର୍ଜିତ ପାଣ୍ଡିତ୍ୟ ଓ ବହୁ ଶାସ୍ତ୍ର ଦର୍ଶିତା ଭଞ୍ଜୀୟ ପ୍ରତିଭା ଓ ଯୋଜନାକୁ ତାଦୃଶ ବଳୀୟାନ୍ ପର୍ଯ୍ୟାୟ ଗୁଡ଼ିକରେ ଉପାଶିତ କରିଛି । ଏଥିରେ ସନ୍ଦେହର, ଅଯୌକ୍ତିକତାର ପ୍ରଶ୍ନ ଉଠିନପାରେ । ଅଳଙ୍କାର ରସ, ଗୂଢ଼ାର୍ଥ, ଧ୍ୱନି, ମନସ୍ତାତ୍ତ୍ୱିକ ବିଶ୍ଳେଷଣ ନାନାବିଧ ଶବ୍ଦାଭିଧାନ ପ୍ରଭୃତିରେ ପାରଦର୍ଶିତା ଲାଭ କରିବା ଲାଗି ସାହିତ୍ୟ ଦର୍ପଣ, କାବ୍ୟ ପ୍ରକାଶ, ଭାବ ପ୍ରକାଶ, ରସ ଗଙ୍ଗାଧର, ଧ୍ୱନ୍ୟାଲୋକ, ଅନେକ ଗୁଡ଼ିଏ ବ୍ୟାକରଣ, ତ୍ରିକାଣ୍ଡ ଶେଷ, ମେଦିନୀ, ଅମର କୋଷ, ସରସ୍ୱତୀକଣ୍ଠାଭରଣ ପ୍ରଭୃତି ଶାସ୍ତ୍ରଗୁଡ଼ିକର ସମ୍ୟକ୍ ଆଲୋଚନା ତାଙ୍କୁ କାବ୍ୟ ସୃଷ୍ଟିରେ ଯେଉଁ ଉନ୍ନତ କୋଟୀକୁ ଆରୋହଣ କରାଇ ଦେଇଛି, ତାହା ଚିନ୍ତାକଲେ

ବହୁଶାସ୍ତ୍ରଦର୍ଶୀ ପଣ୍ଡିତ ମଣ୍ଡଳୀ ଓ ଗମ୍ଭୀର ସମାଲୋଚକମାନେ ମଧ୍ୟ ଚମତ୍କୃତ ହୋଇଥାନ୍ତି ।" (୧)

ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଭାଷାରେ "ବହୁ-ଶାସ୍ତ୍ର-ଦର୍ଶିତା" ବିଷୟରେ ବିଚାର କଲେ ଜଣାଯାଏ ଯେ ଉପେନ୍ଦ୍ରଙ୍କର ସ୍ଥାବରଜଙ୍ଗମାତ୍ମକ ଚରିତ ଜ୍ଞାନ, ନାନା ଅଭିଧାନ, ଛନ୍ଦ, ଅଳଙ୍କାର, ବ୍ୟାକରଣ, ନାନା ପୁରାଣ ଶାସ୍ତ୍ର, କଳା ବିଦ୍ୟା, କାମ ସୂତ୍ର, ସ୍ମୃତି, ଇତିହାସ, ବାର୍ତ୍ତା, ଦଣ୍ଡନୀତି, ନ୍ୟାୟାଦି ଷଡ଼ ଦର୍ଶନ, ସଂସ୍କୃତ ଶ୍ରେଷ୍ଠକାବ୍ୟ, ଗଜାଶ୍ୱାୟୁର୍ବେଦ, ରତ୍ନଜ୍ଞାନ, ଉତ୍କଳର ପ୍ରାଚୀନ କାବ୍ୟ ପୁରାଣ, ଜ୍ୟୋତିଷ, ତନ୍ତ୍ର, ଆୟୁର୍ବେଦ, ଧନୁର୍ବେଦାଦି ବିଦ୍ୟାମାନଙ୍କରେ ପାରଦର୍ଶିତା ଥିଲା ।" (୨)

ଗୀତାଭିଧାନରୁ ଉଦ୍ଧୃତି ଉପରେ ମତ ଦେବାକୁ ଯାଇ ଓ ତାଙ୍କ ଶବ୍ଦ ପାଣ୍ଡିତ୍ୟ ଉପରେ ବିଶ୍ଳେଷଣ କରି ଡକ୍ଟର ଶ୍ରୀ କୁଞ୍ଜବିହାରୀ ତ୍ରିପାଠୀ କହିଅଛନ୍ତି, "ଅମରକୋଷ" ସବୁଠାରୁ ପ୍ରାଚୀନ ଓ ପ୍ରସିଦ୍ଧ । ଏହାର ସମୟ ଖ୍ରୀ: ଅ: ୪ର୍ଥ-୫ମ ଶତାବ୍ଦୀ । ଶାଶ୍ୱତଙ୍କକୃତ "ଅନେକାର୍ଥ-ସମୁଚ୍ଚୟ" ବା ଶାଶ୍ୱତ କୋଷର ସମୟ ହେଉଛି ୬ଷ୍ଠ-୭ମ ଶତାବ୍ଦୀ । ଯାଦବ ପ୍ରକାଶଙ୍କ କୃତ "ବୈଜୟନ୍ତୀ"ର ସମୟ ପ୍ରାୟ ୧୧ଶ ଶତାବ୍ଦୀ । ମହେଶ୍ୱର ଆଚାର୍ଯ୍ୟଙ୍କର ସଙ୍କଳିତ 'ବିଶ୍ୱ ପ୍ରକାଶ' ୧୨ ଶତାବ୍ଦୀର ଅନ୍ତର୍ଭୁକ୍ତ । 'ମେଦିନୀ କୋଷର' ସମୟ ୧୩ଶ-୧୪ଶ ଶତାବ୍ଦୀ । ପୁରୁଷୋତ୍ତମ ଦେବଙ୍କ 'ତ୍ରିକାଣ୍ଡ-

(୧) ଅଧ୍ୟାପକ ଶ୍ରୀ ଜୟକୃଷ୍ଣ ମିଶ୍ର—ଭଞ୍ଜପ୍ରଭା-ପୃଷ୍ଠା ୭୨

(୨) ଲାବଣ୍ୟବତୀ-(ପ୍ରଥମଭାଗ)-ଉତ୍କଳ ବିଶ୍ୱବିଦ୍ୟାଳୟ-୧୯୫୨ ପୃଷ୍ଠା—୧୧୩

ଶେଷ' ସମ୍ଭବତଃ ଖ୍ରୀ ୧୩୦୦ ଆଡ଼କୁ ସଙ୍କଳିତ ହୋଇଥିଲା ବୋଲି ସଂସ୍କୃତ ସାହିତ୍ୟର ଐତିହାସିକ ମାକ୍‌ଡ଼ୋନେଲ ଲେଖିଛନ୍ତି ।

( "ଭଞ୍ଜ ପ୍ରଭା" )

ଏଥିରୁ ଭଞ୍ଜଙ୍କର ଶବ୍ଦ ପାଣ୍ଡିତ୍ୟ ସ୍ପଷ୍ଟଭାବରେ ଜଣାଯାଏ । ଯେଉଁ ଉପେନ୍ଦ୍ର ଗୀତାଭିଧାନରେ ବିନମ୍ରତାସହ "ଶବ୍ଦ ସମୁଦ୍ରବତ୍ ପାର ହେବାକୁ କାହାର ସାମର୍ଥ୍ୟ ଅଛି" ବୋଲି କହିଛନ୍ତି, ସେହି ଉପେନ୍ଦ୍ର ପୁଣି ଶବ୍ଦ ପାଣ୍ଡିତ୍ୟ ଲଭି କଳ୍ପତରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ "ଶବ୍ଦ ସାଗର ପାର" ହୋଇଛନ୍ତି ବୋଲି ଦାମ୍ଭିକ ଉଦ୍‌ଘୋଷଣା କରିଅଛନ୍ତି ।

ବର୍ତ୍ତମାନ କବି କିପରି ଭାବରେ ବିଭିନ୍ନ ଗ୍ରନ୍ଥରୁ ଆହରଣ ଓ ସେଗୁଡ଼ିକର ସାର୍ଥକ ସମୀକରଣରେ ଏକ କୁଶଳୀ କଳାକାର, ତାହା ଦେଖିବାର କଥା । ବାଲ୍ମୀକି ରାମାୟଣର କଥାବସ୍ତୁ, ଘଟଣା, ବର୍ଣ୍ଣନା ବିଳାସ ଦ୍ୱାରା କବି ପ୍ରଭାବିତ ସତ । ମାତ୍ର ପ୍ରତ୍ୟେକ କ୍ଷେତ୍ରରେ ଉପେନ୍ଦ୍ରଙ୍କ ବ୍ୟକ୍ତିତ୍ୱ, ସ୍ୱାତନ୍ତ୍ର୍ୟ, ଓ ପ୍ରତିଭା ନିହିତ । ସୂର୍ପଣଖାର ଚରିତ ବର୍ଣ୍ଣନା କରିବାକୁ ଯାଇ ବାଲ୍ମୀକି ବର୍ଣ୍ଣନା କରିଅଛନ୍ତି:—

ସା ତୁ ସୂର୍ପଣଖା ନା ଦଶଗ୍ରୀବସ୍ୟ ରକ୍ଷସ୍ୟ ।
ଭଗିନୀ ରାମମାସାଦ୍ୟ ଦଦର୍ଶ ତ୍ରିଦଶୋପମମ୍ ॥
ସିଂହୋରସ୍କଂ ଚ ମହାବାହୁଂ ପଦ୍ମପତ୍ରାୟତେକ୍ଷଣମ୍ ।
ଗଜବିକ୍ରାନ୍ତ ଗମନଂ ଜଟାମଣ୍ଡଳ—ଧାରିଣମ୍ ॥
ସୁକୁମାରଂ ମହାସତ୍ତ୍ୱଂ ପାର୍ଥିବବ୍ୟଞ୍ଜନାନ୍ୱିତମ୍ ।
ରାମମିନ୍ଦୀବରଶ୍ୟାମଂ କନ୍ଦର୍ପ ସଦୃଶ ପ୍ରଭମ୍ ॥
ବଭୂବେନ୍ଦ୍ରୋପମଂ ଦୃଷ୍ଟ୍ୱା ରାକ୍ଷସୀ କାମମୋହିତା ।
ସୁମୁଖଂ ଦୁର୍ମୁଖୀ ରାମଂ ବୃତ୍ତ ମଧ୍ୟଂ ମହୋଦରୀ ॥

ବିଶାଳାକ୍ଷଂ ବିରୂପାକ୍ଷୀ ସୁକେଶଂ ତାମ୍ରମୂର୍ଦ୍ଧଜା ।
ପ୍ରିୟରୂପଂ ବିରୂପା ସା ସୁସ୍ୱରଂ ଭୈରବସ୍ୱନା ॥

× × · × ×

ଶ୍ରୂୟତାଂ ରାମ ତତ୍ତ୍ୱାର୍ଥଂ ବକ୍ଷ୍ୟାମି ବଚନଂ ମମ ।
ଅହଂ ଶୂର୍ପଣଖା ନାମ ରାକ୍ଷସୀ କାମରୂପିଣୀ ॥

× × × ×

ଅହଂ ପ୍ରଭାବ ସମ୍ପନ୍ନା ସ୍ୱଚ୍ଛନ୍ଦ ବଳ ଗାମିନୀ ।
ଚିରାୟ ଭବ ଭର୍ତ୍ତା ମେ ସୀତୟା କିଂ କରିଷ୍ୟସି ॥
ଅହମେବାନୁରୂପା ତେ ଭାର୍ଯ୍ୟାରୂପେଣ ପଶ୍ୟମାମ୍ ।
ଇମାଂ ବିରୂପାମସତୀଂ କରାଳଂ ନିର୍ଣ୍ଣତୋଦରୀମ୍ ॥
ଅନେକ ସହ ତେ ଭ୍ରାତ ଭକ୍ଷୟିଷ୍ୟାମି ମାନୁଷୀମ୍ ।
ତତଃ ପର୍ବତ ଶୃଙ୍ଗାଣି ବନାନି ବିବିଧାନି ଚ ॥
ପଶ୍ୟନ୍ ସହ ମୟା କାମୀ ଦଣ୍ଡକାନ୍ ବିଚରିଷ୍ୟସି ।
ଅନୁଜାସ୍ତ୍ୱେଷ ମେ ଭ୍ରାତା ଶୀଳବାନ୍ ପ୍ରିୟଦର୍ଶନଃ ॥
ଶ୍ରୀମାନ କୃତଦାରଶ୍ଚ ଲକ୍ଷ୍ମଣୋ ନାମ ବୀର୍ଯ୍ୟବାନ୍ ।

× × × ×

ଏନଂ ଭଜ ବିଶାଳାକ୍ଷି ଭର୍ତ୍ତାରଂ ଭ୍ରାତରଂ ମମ ।
ଅସପତ୍ନା ବରାରୋହେ ମେରୁମର୍କ ପ୍ରଭା ଯଥା ॥

ବୈଦେହୀଶ ବିଳାସର ଅନୁରୂପ ବର୍ଣ୍ଣନା ଦେବାକୁ ଯାଇ ଉପେନ୍ଦ୍ର ଭଞ୍ଜ ଲେଖିଛନ୍ତି:—

"ବିକ୍ରଷି ମନୁଜ ନାହିଁ ଅନୁଜେ ଗୃହିଁ ।
ବୁଧ ସେ ମୋ ଆଜ୍ଞାବହ ହୋଇବ ନାହା ॥

ବାମଲୋଚନା ସଙ୍ଗତ ନାହିଁ ତାହାର ।
ବାମ ହୋଇ ତର୍କାଳ କରିବ ଗ୍ରହଣ ॥"
"ଇତି ରାମେଣ ସା ପ୍ରୋକ୍ତା ରାକ୍ଷସୀ କାମମୋହିତା
ବିସୃଜ୍ୟ ରାମଂ ସହସା ତତୋ ଲକ୍ଷ୍ମଣମବ୍ରବୀତ୍ ।"
"ବିଲୋକି ସେ ଆଲୋକିତ ସୁନ୍ଦର ରୂପ ।
ବେଗେ ଯାଇ କାମୁକୀ ଲକ୍ଷ୍ମଣ ସମୀପ ॥"
"କଥଂ ଦାସସ୍ୟ ମେ ଦାସୀ ଭାର୍ଯ୍ୟା ଭବିତୁମିଚ୍ଛସି ।"
"ବିନୟୀ ହୋଇ ବିନୟୀ କହି ।
ବକ୍ତବ୍ୟ ତରୁଣ ରାମ ସେବକ ମୁହିଁ ॥
ବ୍ରହ୍ମାଣ୍ଡ ଏକ ରାଜନ ଭଗ୍ନୀ ହେବ କି ।
ବହୁଁ ଭୂମି-ବୃକ୍ଷ ଜାତ କନ୍ୟା ସେବକୀ—

ବାଲ୍ମୀକି ରାମାୟଣରେ ଲକ୍ଷ୍ମଣ ସୂର୍ପଣଖାକୁ ଥଟ୍ଟାକରି ରାମଚନ୍ଦ୍ରଙ୍କର ଯୁବତୀ ସ୍ତ୍ରୀ ହେବାକୁ କହିବାରୁ ସେ କ୍ରୋଧରେ "ସୀତାଙ୍କୁ ଭକ୍ଷଣ କରିବାକୁ ଯାଇ କହନ୍ତି"—

"ଅଦ୍ୟେମାଂ ଭକ୍ଷୟିଷ୍ୟାମି ପଶ୍ୟତସ୍ତବ ମାନୁଷୀମ୍ ।
ତ୍ୱୟା ସହ ଚରିଷ୍ୟାମି ନିଃସପତ୍ନା ଯଥାସୁଖମ୍ ॥

ଭଞ୍ଜେ ଲେଖିଛନ୍ତି:—

ବିଭଗ୍ନ ରସରେ ତବ ସ୍ୱାଧୀନ ଭର୍ତ୍ତା ।
ବିଯୋଗ କରିବ ରଖି ନ ପାରେ ଧାତା ॥

ବାଲ୍ମୀକି ରାମାୟଣରେ ରାମ ଏଠାରେ କ୍ରୋଧ ହୋଇ ସୀତାଙ୍କୁ ରାକ୍ଷସୀ କବଳରୁ ରକ୍ଷା କରିବାକୁ କହିଅଛନ୍ତି । ଲକ୍ଷ୍ମଣ କୁପିତ ହୋଇ ତାର ନାସା କର୍ଣ୍ଣ ଛେଦନ କରିଛନ୍ତି ।

ବାଲ୍ମୀକିଙ୍କ ଭାଷାରେ:—

"ଇତ୍ୟୁକ୍ତୋ ଲକ୍ଷ୍ମଣସ୍ତସ୍ୟାଃ କ୍ରୁଦ୍ଧୋ ରାମସ୍ୟ ପଶ୍ୟତଃ ।
ଉଦ୍ଧୃତ୍ୟ ଖଡ୍ଗଂ ଚିଚ୍ଛେଦ କର୍ଣ୍ଣନାସେ ମହାବଳଃ ॥"

ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସରେ କିନ୍ତୁ ରାକ୍ଷସୀକୁ ଲକ୍ଷ୍ମଣଙ୍କ ଏତିକି କଥା ନାହିଁ । ମାତ୍ର ସୂର୍ପଣଖା ସୀତାଙ୍କୁ ଆକ୍ରମଣ କରନ୍ତେ ତାହା ହାତରେ ଶ୍ଳେଷାର୍ଥକ ପଦ ଭଞ୍ଜେ, ଲକ୍ଷ୍ମଣଙ୍କ ନିକଟକୁ ଦେଇଛନ୍ତି । ତହିଁରେ ତାହାର ଉତ୍କଣ୍ଠା ଉତ୍ସାହ ବିଶେଷ ବୃଦ୍ଧି କରିଛନ୍ତି । ଭଞ୍ଜ ଏକ ନାଟକୀୟ ପରିବେଶ ମଧ୍ୟରେ ଯେପରି ଭାବରେ ସୂର୍ପଣଖା ଚରିତକୁ ଉତ୍କଣ୍ଠା, ଉତ୍ସାହ ମଧ୍ୟ ଦେଇ ଚରମ ପରିଣତିରେ ପହଞ୍ଚାଇଛନ୍ତି, ତାହା ବାଲ୍ମୀକି ରାମାୟଣରେ ବିରଳ ।

ଏତଦ୍ ବ୍ୟତୀତ ଶବରୀ ପ୍ରସଙ୍ଗ ଓ ଦଣ୍ଡକାରଣ୍ୟର ଋଷି-ମାନଙ୍କର କୋଟି କୋଟି ମନ୍ମଥର ମନ୍ମଥ, ରାମଚନ୍ଦ୍ରଙ୍କୁ ଦେଖି ଯେପରି କାମଭାବରେ ଉଦ୍ଦୀପିତ ହୋଇଛନ୍ତି ତାହା ରାମାୟଣରେ ବିରଳ । ଉପେନ୍ଦ୍ର ଭଞ୍ଜ ଏହା କୃପାସିନ୍ଧୁ ବଳରାମ ଦାସଙ୍କ ଦାଣ୍ଡି ରାମାୟଣରୁ ଗ୍ରହଣ କରିଥିଲେ ମଧ୍ୟ ନିଜର ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞା ଦ୍ୱାରା, ନିତ୍ୟ ନୂତନ ଭାବରେ ବର୍ଣ୍ଣନା କରି-ଅଛନ୍ତି । ଦଣ୍ଡକାରଣ୍ୟର ଋଷିମାନଙ୍କର ବର୍ଣ୍ଣନା ଦାଣ୍ଡି ରାମାୟଣରେ ଅତିକ୍ଷୁଦ୍ର; କିନ୍ତୁ ଉପେନ୍ଦ୍ରଙ୍କ ବର୍ଣ୍ଣନାରେ ତାହା ବିସ୍ତୃତ, ଅତିରଞ୍ଜିତ ।

ବାଲ୍ମୀକି ରାମାୟଣରେ ଅଗସ୍ତ୍ୟ ମୁନିଙ୍କର ଆଶ୍ରମ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି—

"ମାର୍ଗ ନିରୋଧଂ ସତତଂ ଭାସ୍କରସ୍ୟାଚଳୋତ୍ତମଃ
ଅଗସ୍ତ୍ୟସ୍ୟାଶ୍ରମଃ ଶ୍ରୀମାନ୍ ବିନୀତ ମୃଗସେବିତଃ ।"

'ଶମୀତ ମୃଗ ସେବିତ' ଏହାକୁ ନେଇ ଭଞ୍ଜ ଅଗସ୍ତ୍ୟ ଋଷିଙ୍କ ଆଶ୍ରମକୁ ନିଜର କଳ୍ପନା ତୂଳିକାରେ କିପରି ମର୍ମସ୍ପର୍ଶୀ ଓ ଚମତ୍କାର କରିଛନ୍ତି ତାହା ଦେଖିବାର କଥା । ଉପେନ୍ଦ୍ରଙ୍କ ଭାଷାରେ

"ବାତାପି ସୂଦନ ଆଶ୍ରମ । ବଟିନେ ପ୍ରବେଶ ଶ୍ରୀରାମ ॥
ବଇସି ହଂସୀ ତହିଁହିତ । ବଇସି ସନ୍ନିଧେ କପୋତ ॥
ବାୟସ କଉଶିକ ମେଳ । ବସି ଅଛନ୍ତି ଏକ ଡାଳ ॥
ବ୍ୟାଳ ଫଣାକୁ ଟେକି ଖେଳ । ବରହୀ ପାଶେ ନୃତ୍ୟ ଶାଳୀ ॥
ବାରଣ ସିଂହ ଏକ ସ୍ଥାନ । ବରତ ଅଛନ୍ତି ଶୟନ ॥
ବ୍ୟାଘ୍ର କୁରଙ୍ଗ ରଙ୍ଗ ବହି । ବୃକାଳ ମିଳୁଛନ୍ତି ତହିଁ ॥

ସ୍ଥୂଳତଃ କହିବାକୁ ଗଲେ ପୌରାଣିକ ସତ୍ୟତାକୁ ବ୍ୟାହତ ନକରି ଭଞ୍ଜ ଯେଉଁ ଦୂରଦର୍ଶୀ କଳ୍ପନାର ଗୁମ୍ଫନ କରିଛନ୍ତି, ତାହା ଅନନ୍ୟ ବିରଳ ।

ଉପେନ୍ଦ୍ର ଭଞ୍ଜ କବି କାଳିଦାସଙ୍କ ଦ୍ୱାରା ଅନେକାଂଶରେ ପ୍ରଭାବିତ । କୁମାର ସମ୍ଭବ, ରଘୁବଂଶ, ଋତୁସଂହାର, ମେଘଦୂତ ଓ ଅଭିଜ୍ଞାନ ଶକୁନ୍ତଳ ପ୍ରଭୃତି କାବ୍ୟ ଗ୍ରନ୍ଥରେ ସମ୍ୟକ୍ ପ୍ରବେଶ କରି କବି ଯେ ଆହୃତ ସମ୍ପଦକୁ କିପରି ଭାବରେ ସ୍ୱୀୟ କାବ୍ୟ କୃତିରେ ସାଇତି ରଖିଛନ୍ତି, ତାହା ବର୍ତ୍ତମାନ ଦେଖିବାର କଥା ।

ଉପେନ୍ଦ୍ରଙ୍କ ଚିତ୍ରକୂଟ ବର୍ଣ୍ଣନା କାଳିଦାସଙ୍କ ଦ୍ୱାରା ପ୍ରଭାବିତ । ବର୍ତ୍ତମାନ ଦେଖାଯାଉ, ଲାବଣ୍ୟବତୀ କାବ୍ୟରେ କ୍ଷତ୍ରିୟ କୁମାର ପ୍ରଭାକର କଠିନ ତପସ୍ୟା ବର୍ଣ୍ଣନାରେ ଭଞ୍ଜ କିପରି କାଳିଦାସଙ୍କ ଦ୍ୱାରା ପ୍ରଭାବିତ ।

"ଶୁଚୌ ଚତୁର୍ଣ୍ଣାଂ ଜ୍ୱଳତାଂ ହବିର୍ଭୁଜାଂ
  ଶୁଚିସ୍ମିତା ମଧ୍ୟଗତା ସୁମଧ୍ୟମା
ବିଜିତ୍ୟ ନେତ୍ର-ପ୍ରତିଘାତିନୀଂ ପ୍ରଭା—
  ମନନ୍ୟ-ଦୃଷ୍ଟିଃ ସବିତାର ମୈକ୍ଷତ (କୁମର ସମ୍ଭବ ୫।୨୦)

ଶିଳା ଶୟାଂ ତାମନିକେତ ବାସିନୀଂ
  ନିରନ୍ତରାସ୍ୱନ୍ତର ବାତ ବୃଷ୍ଟିଷୁ
ବ୍ୟଲୋକୟ-ନ୍ନୁନ୍ମିଷିତୈସ୍ତଡ଼ିନ୍ମୟୈ-
  ର୍ମହାତପଃ-ସାକ୍ଷ୍ୟଇବ ସ୍ଥିତାଃକ୍ଷପାଃ (କୁମାର ସମ୍ଭବ ୬।୨୫)

ନିନାୟ ସାତ୍ୟନ୍ତ ହିମୋତ୍କିରାନିଳାଃ ।
  ସହସ୍ୟ-ରାତ୍ରି ରୁଦ ବାସ-ତତ୍ପରା ॥
ପରସ୍ପରା-କ୍ରନ୍ଦନ ଚକ୍ରବାକୟୋଃ ।
  ପୁରୋ ବିଯୁକ୍ତେ ମିଥୁନେ କୃପାବତୀ ॥ (କୁମାର ସମ୍ଭବ ୫।୨୬)

ଏଠାରେ କବି ଉପେନ୍ଦ୍ର କାଳିଦାସଙ୍କ କୁମାର ସମ୍ଭବର ପାର୍ବତୀ ମହାଦେବଙ୍କୁ ପାଇବାର କଠୋର ତପସ୍ୟାର ଅନୁରୂପ ଲାବଣ୍ୟବତୀରେ ବର୍ଣ୍ଣନା ଦେଇଅଛନ୍ତି । ଉଦାହରଣ ସ୍ୱରୂପ—

"ତପ ତା ଅକଥନୀୟ ଦ୍ରବ୍ୟ ନାଗ୍ରହେ
ପଞ୍ଚାଗ୍ନି ସ୍ଥାପନ କରେ ତପଋତୁ ମଧ୍ୟେ
ପ୍ରାବୃଟ କାଳରେ ଗୃହୋଦରକୁ ନ ଯାଇ
ଝଞ୍ଜାବାତ ଜଳପାତ କରକା ସହଇ
ଶୀତେ ଜଳଶାୟୀ ଭୂମି ଶଯ୍ୟା ବସ୍ତ୍ରସ୍ଥାନେ
ମୃତ୍ତିକା ଶଙ୍କର ପୂଜା କରେ ପ୍ରତିଦିନେ ।"

(ଲାବଣ୍ୟବତୀ— ୧।୨୭-୨୯)

କାଳିଦାସ ରଘୁବଂଶ ମହାକାବ୍ୟର ଆଦ୍ୟରେ ଲେଖିଛନ୍ତି:—

କ୍ୱ ସୂର୍ଯ୍ୟ-ପ୍ରଭବୋ ବଂଶଃ କ୍ୱ ଚାଳ୍ପ-ବିଷୟାମତିଃ ।
ତିତୀର୍ଷୁର୍ଦୁସ୍ତରଂ ମୋହାଦୁଡୁପେନାସ୍ମି ସାଗରଂ ॥ (୧।୨)

× × × ×

ଅଥବାକୃତ-ବାଗ୍‌ଦ୍ୱାରେ ବଂଶେଽସ୍ମିନ୍ ପୂର୍ବ-ସୂରିଭିଃ ।
ମଣୌବଜ୍ର-ସମୁତ୍କୀର୍ଣ୍ଣେ ସୂତ୍ରସ୍ୟେବାସ୍ତି ମେ ଗତିଃ ॥ (୧।୪)

ଉପେନ୍ଦ୍ର ଭଞ୍ଜ ଏହାପରି ପ୍ରଭାବରେ ପ୍ରଭାବିତ ହୋଇ ସ୍ୱୀୟ ରଚିତ କାବ୍ୟ ବୈଦେହୀଶ ବିଳାସର ଆଦ୍ୟ ଛାନ୍ଦରେ ଲେଖିଛନ୍ତି:—

"ବିବେକବନ୍ତ ଉଦୟ ଏମନ୍ତ ଧ୍ୟାୟି ଯେ,
ବ୍ୟୋମେ ତାରକା ଯେବେ ଝଲକୁ ଥାଇ ଯେ
ବିଭାବସୁରେ ଜ୍ୟୋତି ବିଙ୍ଗଣ ଜ୍ୟୋତିକ ଦେଖାନ୍ତି ପୁଣି
ସୁଜନେ ସାବଧାନରେ ଶୁଣ ଛାନ୍ଦ ରଚଇ ଯେ,
(ବୈଦେହୀଶ ବିଳାସ-୧।୪)"

"ଦ୍ରୁମାଃ ସପୁଷ୍ପାଃ ସଲିଳଂ ସପଦ୍ମଂ
ସ୍ତ୍ରିୟଃ ସକାମାଃ ପବନଃ ସୁଗନ୍ଧିଃ
ସୁଖାଃ ପ୍ରଦୋଷାଃ ଦିବସାଶ୍ଚ, ରମ୍ୟାଃ,
ସର୍ବଂ ପ୍ରିୟେ ଚାରୁତରଂ ବସନ୍ତେ ।" (ଋତୁ ସଂହାର)

ବସନ୍ତ ଆସିବାରୁ ପୁଷ୍ପମାନେ ପୁଷ୍ପିତ ହେଲେ, ଜଳରେ ପଦ୍ମଫୁଲ ପ୍ରସ୍ଫୁଟିତ ହେଲା । ସୁଗନ୍ଧ ପବନ ହେତୁରୁ ସ୍ତ୍ରୀମାନେ କାମରେ ଘାରି ହେଲେ । ପ୍ରଦୋଷ ସୁଖକର ହେଲା ଓ ଦିବସ ରମଣୀୟ ହେଲା । ଉପେନ୍ଦ୍ର କାଳିଦାସଙ୍କ ପଦାଙ୍କ ଅନୁସରଣ କରି ବସନ୍ତ ବର୍ଣ୍ଣନା କରିଛନ୍ତି ।

"ମଳୟ ଶିଖରୀ ଶିରୀ ଗେହ୍ଲର କର
ବହ୍ନିଲଣି ମନ୍ଦ ମର୍ମର
ସୁମନାଙ୍କ ବାସ ଗେହ୍ଲାଇ ନେବଟି
ବୋଲି କହ୍ନିଲଣି ଭ୍ରମର,
କେଶର । କେଶରେ ହେଲେଣି ମଞ୍ଜୁଳ
କେଶରେ ମଣ୍ଡନ କରିବା ଛଳରେ
ଫୁଟିଲେଣି କେତେ କଞ୍ଜୁଳ ।
ମଲ୍ଲୀ ମାଧବୀ ମକରନ୍ଦ ସାଧବୀ
ହେଲେଣି ବାନ୍ଧବୀ କାନନେ,
ତୃଷାର ନାଶ ଗୃହ୍ନିଁ ହାସ ପ୍ରକାଶ
କଲେଣି ପଙ୍କଜ ଆନନେ ।
ହେଲେଣି । ତର୍ଣ୍ଣ ପ୍ରକଟ କଣ୍ଠେ
ଅତନୁ ଫୁଲର ବଶିଖ କାର୍ମୁକେ
ଯେନ ତର୍ଜିଲଣି କାମୁକେ ।
(ଲାବଣ୍ୟବତୀ-୫ମ ଛାନ୍ଦ)

କାଳୀଦାସ ରଘୁବଂଶରେ ବର୍ଣ୍ଣନା କରିଅଛନ୍ତି—

ନୃତ୍ୟଂ ମୟୂରାଃ କୁସୁମାନି ବୃକ୍ଷାଃ
ଦର୍ଭାନୁପାତ୍ତାନ୍ ବିଜହୁର୍ହରିଣ୍ୟଃ ।
ତସ୍ୟାଃ ପ୍ରପନ୍ନେ ସମଦୁଃଖଭାବଂ
ଅତ୍ୟନ୍ତ-ମାସୀଦ୍ରୁଦିତଂ ବନେଽପି ।

ସୀତାଙ୍କ ଦୁଃଖରେ ବ୍ୟଥିତ ହୋଇ ମୟୂରମାନେ ନୃତ୍ୟ ପରିତ୍ୟାଗ କଲେ । ବୃକ୍ଷମାନେ ପୁଷ୍ପ ଛଳରେ ଅଶ୍ରୁ ବିସର୍ଜନ

କଲେ । ହରିଣୀଗଣ କୁଶଗ୍ରାସ ଗ୍ରହଣ ମଧ୍ୟ କଲେ ନାହିଁ । ସୀତାଙ୍କ ଦୁଃଖରେ ସମ୍ବେଦନଶୀଳ ହୋଇ ଅରଣ୍ୟ ପ୍ରକୃତିରେ ମଧ୍ୟ ବିଷାଦର ଛାୟା ଖେଳି ଯାଇଥିଲା ।

ଠିକ୍ ଉପେନ୍ଦ୍ର ଭଞ୍ଜ ଏହି ଛାୟାରେ ରାବଣ ସୀତାଙ୍କୁ ଅପହରଣ କରି ନେଇଗଲା ସମୟରେ ପ୍ରକୃତି ବର୍ଣ୍ଣନା କରିଅଛନ୍ତି —

"ବାଳ ସରିତ ସ୍ଥଳିତ ତରଳିତ ହୋଇଲା ପାଷାଣ
ବସୁଧା କମ୍ପିତ ଚକିତ ଦେବତା କି ହେଲା କି ହେଲା
ବଦନେ ଶୋଚନେ ଅଶ୍ରୁ ବମେ'ଚନେ ଆକାଶ ପୂରିଲା
ବରଷିଲା ଝୋପା ଝୋପା ମାରି କମ୍ପା ନଥାଇ ମୂହିର
ଉହଙ୍ଗ ଉଲ୍କେ ଭ୍ରମନ୍ତି ଗୃତକେ ବାରିଲେ ପାନର ।

( ବୈଦେହୀଶ ବିଳାସ-୨୪ )

କାଳିଦାସ ଅଭିଜ୍ଞାନ ଶାକୁନ୍ତଳ ନାଟକରେ ଲେଖିଛନ୍ତି —

ଅନୁମତଗମନା ଶକୁନ୍ତଳା
ତରୁଭିରିୟଂ ବନବାସ ବନ୍ଧୁଭିଃ
ପରଭୃତ ବିରୁତଂ କଳଂ ଯଥା
ପ୍ରତିବଚନୀକୃତମେଭିରୀଦୃଶମ୍ ।

( ଅଭିଜ୍ଞାନଶାକୁନ୍ତଳ-୪।୧୦ )

ଠିକ୍ କାଳିଦାସଙ୍କ ପରି ଜୀବନ୍ତ ପ୍ରକୃତି ମଧ୍ୟ ଭଞ୍ଜ ବର୍ଣ୍ଣନା କରିବାରୁ ବିରତ ହୋଇ ନାହାନ୍ତି ।
"କଉଁ କଉଁ ତରୁଣୀମାନଙ୍କୁ ପକ୍ଷୀନନାଦରେ କହନ୍ତି ।"

( ଲାବଣ୍ୟବତୀ-୫ ଛାନ୍ଦ )

ଋତୁ ସଂହାରରେ ବର୍ଣ୍ଣନା ଦେବାକୁ ଯାଇ କାଳିଦାସ ଲେଖିଛନ୍ତି—

ରବେର୍ମୟୂଖୈରଭିତାପିତୋ ଭୃଶଂ
ବିଦହ୍ୟମାନଃ ପଥିତପ୍ତ ପାଂଶୁଭିଃ
ଆବାଙ୍ମୁଖୋ ଜିହ୍ମଗତିଃ ଶ୍ୱସନ୍ମୁହୁଃ
ଫଣୀ ମୟୂରସ୍ୟ ତଳେ ନିଷୀଦତି ।
( ଋତୁସଂହାର-୧।୧୩ )

× × × ×

ଧନାନ୍ତରମ୍ୟୋଽଭ୍ୟୁପ ଶାନ୍ତ ମନ୍ମଥୋ
ନିଦାଘକାଲୋଽୟମୁପାଗତଃ ପ୍ରିୟେ" ।
( ଋତୁସଂହାର-୧।୧ )

ଲାବଣ୍ୟବତୀ କାବ୍ୟରେ ଭଞ୍ଜ ଏହାର ଅନୁରୂପ ବର୍ଣ୍ଣନା ଦେଇଅଛନ୍ତି—

"କରେ ତାପିତ କଲେ ରବି ମଣ୍ଡଳ ପ୍ରତାପୀ ରାଜା ଯେସନ,
ଭୁଜଙ୍ଗ ପକ୍ଷ ଛାଇରେ ରଖି ଶିଖୀ କୁଳଟା ନାରୀ ସମାନ ।
କାମ ଚଳାଇଲା ସରଣୀ ଙ୍ଗାମରେ ନଗରୀ ଦୋଷୀ ବିଦେଶୀ,
ନ ବୋଢ଼ା ଗାଢ଼ ସୁରତ କାଳ ପ୍ରାୟୁ ଭୃଙ୍ଗ ମଲ୍ଲୀ ମଲ ଭଷି ।
( ଲାବଣ୍ୟବତୀ-୪୦।୩-୪ )

ମୟୂର ପକ୍ଷ ଛାଇରେ ସର୍ପ ଶୟନ କରିବା କେବଳ ଲାବଣ୍ୟବତୀରେ ନୁହେଁ, ଭଞ୍ଜଙ୍କର ସୁଭଦ୍ରା ପରିଣୟ, କୋଟିବ୍ରହ୍ମାଣ୍ଡ-ସୁନ୍ଦରୀ କାବ୍ୟମାନଙ୍କରେ ମଧ୍ୟ ବର୍ଣ୍ଣିତ ହୋଇଅଛି ।

"କେଆପୁଷ୍ପ ତଳେ ତାପିଚ୍ଛି ଗୁଛ ବସୁର ଅହ" ।

( କୋଟିବ୍ରହ୍ମାଣ୍ଡ ସୁନ୍ଦରୀ-୧୮।୧୫ )

"ଶୋଭଲେ ସିଂହ ଘଟା ତଳେ କୁଞ୍ଜର ମୟୂର ପୁଚ୍ଛ ତଳେ ଅହି" ।

( ସୁଭଦ୍ରା ପରିଣୟ-୧୭।୨ )

କାଳିଦାସଙ୍କ କୁମାର ସମ୍ଭବରେ ଅଛି—

ପଦଂ ତୁଷାର-ସ୍ରୁତି-ଧୌତରକ୍ତଂ
ଯସ୍ମିନ୍ ଦୃଷ୍ଟ୍ୱାପି ହତଦ୍ୱିପାନମ୍
ବଦନ୍ତି ମାର୍ଗଂ ନଖରନ୍ଧ୍ର-ମୁକ୍ତୈର୍ମୁକ୍ତା—
ଫଳୈଃ କେଶରିଣାଂ କିରାଣଃ ।

( କୁମାରସମ୍ଭବ-୧।୫ )

ଠିକ୍ ଏହିପରି ବର୍ଣ୍ଣନା କରିବାକୁ ଯାଇ ଉପେନ୍ଦ୍ର ଲେଖିଛନ୍ତି—

"ଶବରୀ ଶବରୀ ଶେଷୁ ଅରଣ୍ୟକୁ ଯାଇ
ହରି-ବିଦାରିତ-କରି-ମୋତି ପଡ଼ିଥାଇ ଯେ"

( ଲାବଣ୍ୟବତୀ-୭।୧୦ )

ମେଘଦୂତରେ କାଳିଦାସଙ୍କର ବର୍ଣ୍ଣିତ ହୋଇଛି—

"ରତ୍ନଛାୟା ବ୍ୟତିକରମିବ ପ୍ରେକ୍ଷମେତତ୍ ପୁରସ୍ତାତ୍
ବାଲ୍ମୀକାଗ୍ରାତ୍ ପ୍ରଭବତି ଧନୁଃ ଖଣ୍ଡମା-ଖଣ୍ଡଳସ୍ୟ" ।

ଉପେନ୍ଦ୍ର ଏହାର ଅନୁରୂପ ବର୍ଣ୍ଣନା ଦେବାକୁ ଯାଇ ଲେଖିଛନ୍ତି—

ତୋରଣ ବନ୍ଧ ରତ୍ନେ ପ୍ରାସାଦ ମଣ୍ଡିତ ଯତ୍ନେ
ବାଲ୍ମୀକରେ ଇନ୍ଦ୍ର ଗୃହ ଜାତସ୍ପୃହା ଯେ ।
( କୋଟିବ୍ରହ୍ମାଣ୍ଡସୁନ୍ଦରୀ-୦।୧୩ )

କାଳିଦାସଙ୍କ ଶୃଙ୍ଗାର ତିଳକରେ କେଶକୁ ଶୈବାଳ, ମୁଖକୁ କମଳ ଭାବରେ ବର୍ଣ୍ଣନା କରାଯାଇଛି । ଯଥା:—

"ବାହୂ ଦ୍ୱୌଚ ମୃଣାଳମାସ୍ୟ କମଳଂ ଲାବଣ୍ୟ ଲୀଳାଜଳଂ
ଶ୍ରୋଣୀ ତୀର୍ଥଶିଳା ଚ ନେତ୍ର-ଶଫରଂ ଧମ୍ମିଲ୍ଲଶୈବାଳକମ୍ ।
କାନ୍ତାୟାଃ ସ୍ତନଚକ୍ରବାକ-ଯୁଗଳଂ କନ୍ଦର୍ପବାଣାନଳୈ—
ର୍ଦଗ୍ଧାନାମବଗାହନାୟ ବିଧିନା ରମ୍ୟଂ ସରୋନିର୍ମିତଂ ।

ଭଞ୍ଜ ଛନ୍ଦେ ଛନ୍ଦେ ଏହାଦ୍ୱାରା ପ୍ରଭାବିତ ହୋଇଛନ୍ତି । ଏହିପରି ଭାବରେ ଆଲୋଚନା ଓ ତୁଳନା କଲେ ଜଣାଯାଏ ଯେ, ନିଜ କାବ୍ୟାବଳୀରେ ସ୍ୱୀକାର କରି ନେଇଥିବା କାଳିଦାସଙ୍କ କାବ୍ୟଗୁଡ଼ିକ ଦ୍ୱାରା ସେ ପ୍ରଭାବିତ । ତଥାପି ପ୍ରତି ଛନ୍ଦେ ଛନ୍ଦେ ସେଥିରେ କବିଙ୍କର ମୌଳିକତ୍ୱ, ବ୍ୟକ୍ତିତ୍ୱ ଓ ସ୍ୱାତନ୍ତ୍ର୍ୟ ନିହିତ । କହିବାକୁ ଗଲେ—

Talent is madurate and measured, genius is always revolutionary. Talent is obedience, genius is boldness and daring. Talent is of the world, genius of another. (୧)

---

(୧) The meaning of creative act.

ଉପେନ୍ଦ୍ର ଭଞ୍ଜ ଏଣୁ ଶତ ଆଦରଣ ସତ୍ତ୍ୱେ ନୂତନ ଛନ୍ଦ, ନୂତନ ଉପମା ସୃଷ୍ଟି କରି କଳ୍ପନାର କାଉଁରୀ ସ୍ପର୍ଶରେ ତାକୁ ନୂତନ ରୂପେ ପରିବେଷଣ କରିଛନ୍ତି । ଥରେ ଦେଖନ୍ତୁ ଭଞ୍ଜୀୟ ଚମତ୍କାର ପରିକଳ୍ପନା ।

"ବଦନ ଓଷ୍ଠ ସୁଷମା କର ପୂଷ୍ପ ପୂର୍ଣ୍ଣିମୀ ପ୍ରାଚୀକି ।
ବିଧି ବାଳା ଏକ ବ୍ୟାଜେ ରୌପ୍ୟ ମାଣିକ୍ୟ ସ୍ଥାଳୀକି ରଚିକି ?
ବଦାଣ ମାସକେ ରଚେ କେ ଉସ୍ତୁକେ କେ ନିତି ବଦାଇ ।
ବିହଙ୍ଗ ଆଳୀ ଦ୍ୱିକାଳେ ହୁଳହୁଳ ତହିଁକି କି ଦେଇ ।
ବଦଇ ଶଙ୍ଖ ନୋହିବା ହେବା ଯୋଗ ଏକାଳ ସୁରୁଚି
ବାସର ମୁଖେ ସନ୍ଧ୍ୟାରେ ଭ୍ରମି ଦୁଃଖେ ଦେଖନ୍ତି ସେ ଲୁଚି ।
( ବୈଦେହୀଶବିଳାସ-୨୪ )

ଏତ ଗଲା କବି କାଳିଦାସଙ୍କ କଥା । ବର୍ତ୍ତମାନ ମହାନାଟକ ବିଷୟ ଦେଖାଯାଉ । ବୈଦେହୀଶ ବିଳାସ କାବ୍ୟରେ ଉପେନ୍ଦ୍ର ଅତି ବିନୟର ସହିତ ମହାନାଟକ ଦ୍ୱାରା ପ୍ରଭାବିତ ହୋଇଥିବାର ସ୍ୱୀକାର କରିଅଛନ୍ତି । ବୈଦେହୀଶ ବିଳାସର ଗଙ୍ଗା ବର୍ଣ୍ଣନା, ମଧୁବନ ବର୍ଣ୍ଣନା, ସୀତାଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା ଓ ରାବଣ ସହିତ ଯୁଦ୍ଧରେ ରାମଙ୍କର ହସ୍ତଦ୍ୱୟ ମଧ୍ୟରେ କଥୋପକଥନାଦି ମହାନାଟକ ବର୍ଣ୍ଣନା ଅନୁରୂପ । ମହାନାଟକରେ ସୀତାଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ ହନୁମାନ ଲେଖିଛନ୍ତି—

"ବର୍ଣ୍ଣଂ ସୁବର୍ଣ୍ଣଂ ଦଦତେସ୍ୱଦେହଂ
ବିକ୍ଷେପ କାନ୍ତିଂ ତଦ ଦନ୍ତପଙ୍କ୍ତିଂ ।
ବିଲୋକ୍ୟ ତୂର୍ଣ୍ଣଂ ମଣିବୀଜପୂର୍ଣ୍ଣଂ
ଫଳଂ ବିଦୀର୍ଣ୍ଣଂ କିଳ ଦାଡ଼ିମ୍ବସ୍ୟ" (ମହାନାଟକ-୨।୫୫)

ଉପେନ୍ଦ୍ରଙ୍କ ଭାଷାରେ—

"ବଗ୍ରହକାନ୍ତ କ ଙ୍ଠକନ୍ତ କର୍ନିକ ଅନାଇଲ
ବାନ ବଡ଼ାଲ ଅଗ୍ନିଟରେ ଦହ୍ନି ଶିଳେ କଷାଇ ହେଲ

( ବୈଦେହୀଶ ବଳାସ-୮।୩ )

ଶୀଙ୍କ ଦେଖାଇ ସମାନ ନୋହି ଦାଡ଼ିମ୍ବ ଫଳ ଫାଟି ।

( ବୈଦେହୀଶ ବଳାଶ-୮।୨୩ )

ମହାନାଟକରେ ସୀତାଙ୍କ ରୂପ ବର୍ଣ୍ଣନାରେ ଅଛି—

"ଅରଣ୍ୟଂ ସାରଙ୍ଗୈର୍ଗିରିକୁହରଗର୍ଭାଂଶ୍ଚ ହରିଭିଃ
ଦିଶୋହଙ୍ଗ ମାତଙ୍ଗୈଃଶ୍ରିତମପି ବନଂ ପଙ୍କଜବନୈଃ
ପ୍ରିୟାଚକ୍ଷୁର୍ମଧ୍ୟସ୍ତନବଦନ ସୌନ୍ଦର୍ଯ୍ୟବଜିତୈଃ
ସତାଂ ମାନମ୍ଲାନେ ମରଣମଥବା ଦୂର-ସରଣଂ"

( ମହାନାଟକ-୨।୫୩ )

"ବପିନ ଘନେ ପକ୍ଷୀ ବହନେ ଚଞ୍ଚଳେ ହାରି ମୃଗ
କଂଶରେ କେହି ସେ ସମଧାୟୀ ମରି ଇନ୍ଦୁରେ ଯୋଗ ।
ବାଞ୍ଛିତ କର୍ମହୀନର ଶ୍ରମ କଲେ ପ୍ରାପତ ନାହିଁ ।
ବମଳ ପଦାର୍ଥକୁ ସଦଦା ସମୂଳ କଲ ନାହିଁ ।

( ବୈଦେହୀଶ ବଳାସ-୮।୧୧ )

ଏଠାରେ ଉପେନ୍ଦ୍ର ମହାନାଟକର ଆଶ୍ରୟରେ କେତେକ ପଂକ୍ତି ରଚନା କରିଥିଲେ କି, ଆଉ ଏକପାଦ ସେ ଅଗ୍ରସର ହୋଇ ଚନ୍ଦ୍ରର ମୃଗାଙ୍କ ନାମର ସାର୍ଥକତା ଦେଖାଇଛନ୍ତି । ପଦ୍ମସ୍ଥଳେ

'କୁମୁଦ' ବ୍ୟବହାର କରି ତାହା କଳରେ ବୁଡ଼ି ମରିବାର କହିଅଛନ୍ତି ।

ମହାନାଟକରେ ମଧୁବନ ଙ୍କର ଅନୁରୂପ ବର୍ଣ୍ଣନା ମଧ୍ୟ ବୈଦେହୀଶ ବିଳାସରେ ଅଛି । ମାତ୍ର ତଥାପି ସ୍ଥଳବିଶେଷରେ କବିଙ୍କର ମୌଳିକତ୍ୱ ତହିଁରେ ନିହିତ ରହିଛି ।

"ଯତ୍ରାରଣ୍ୟେ ବହନ୍ତି ହତଂ ମାରୁତଶ୍ଚାତିମନ୍ଦଂ
ସୂର୍ଯ୍ୟୋ ଯତ୍ର ତପତି ଚକିତସ୍ତୋୟଦସ୍ତୋୟ ଦାନେ ।
ଭଗ୍ନାନ୍ଦଗ୍ଧ ଘଟୟନ୍ତି ସଦା ପ୍ରାଚରଂ ବିଶ୍ୱକର୍ମା
ତତ୍ତେଽରଣ୍ୟଂ କ୍ଷଣମପି କଥଂ ବାନରେଣୈବ ଭଗ୍ନ" ।
( ମହାନାଟକ ୫।୭୪ )

"ବସନ୍ତି ସେ ବସନ୍ତର ସକଳ କାଳରେ
ବିପିନ ନାମେ ଲୋଚନ ମଧୁବନ କରେ ଯେ ।
ବିବିଧ ତରୁଣ ତରୁ ଲତା ଗୁଳୁ ଅତି
ବନ୍ଧ୍ୟା ନାହିଁ ସର୍ବେ ଫଳବନ୍ତ ପୁଷ୍ପବତୀ ଯେ
ବିଭାବସୁ ଅଂଶୁ ପଶୁ ନାହିଁ ପତ୍ର ଘନେ ।
ବିହରି ବିହଗ ପଞ୍ଚମସ୍ୱ ଶୋଭି ରବେ ଯେ ।
ବିନ୍ଦୁ ଳିତ ଯହିଁ ନାନା ରତ୍ନ ଆଳବାଳ
ବାସର ରଜନୀ ମେଳ ପ୍ରଭା ମହୋଜ୍ଜ୍ୱଳ ଯେ
ବାସ୍ତୋଷ୍ପତି ଧନପତି ସେବେ ଲଙ୍କନାଥ
ବିନତି ସେ ବନରେ ନନ୍ଦନ ଚୈତ୍ରରଥ ଯେ
ବହନ୍ତି ଅମୃତତୁଲ୍ୟ ଶୀତଳ ଅମୃତ
ବନ୍ତାନ୍ତ ଗୃହ ଜୀମୂତେ ବାଦ କରି ନଟ୍ୟ ଯେ" ।
( ବୈଦେହୀଶ ବିଳାସ-୩୬।୧-୨ )

ମହାନାଟକ ବର୍ଣ୍ଣିତ ଅଙ୍ଗଦ ଓ ରାବଣର କଥୋପକଥନ ଦେଖନ୍ତୁ—

"ରେ ରେ ରାବଣାଃ କଣ୍ଠ ବନ୍ଧୁନେତାନ୍ ନସ୍ତଂଶୁଣ୍ଡ ମଃ
ତତ୍ରୈକଃ କଳ କାର୍ତ୍ତବୀର୍ଯ୍ୟନୃପତେ ର୍ଦୋ ର୍ଦଣ୍ଡପିଣ୍ଡୀକୃତଃ ।
ଏକୋନର୍ତ୍ତିନଳବ୍ଧଭକ୍ତ କବଳୋ ଦୈତ୍ୟେନ୍ଦ୍ର ଦାସୀଗଣୈ
ରନ୍ୟୋମତ୍ପିତୃବାହୁମୂଳ ଗଳିତସ୍ତଂତେଷୁକୋଽନ୍ୟୋଽଥବା

ଉପେନ୍ଦ୍ର ବର୍ଣ୍ଣନା କରିବ କୁ ଯାଇ ଲେଖିଛନ୍ତି:—

"ରବସ୍ୱାନ ବଂଶୀ ଆଦେଶେ ଏକାଳେ ଆସି ମୁଁ ଅଙ୍ଗଦ ଭଣି ।
ବୈଦେହୀ ସମର୍ପ ଜୀବେ ଥିଲେ ଆଶ ମୂଠା-ଆଜ୍ଞା ଅଛୁ ଆଣି ମୁଁ ॥
ବୋଲେ ଲଙ୍କେଶ ଏପଦ । ବଳମେ ହେବୁ ଅଙ୍ଗଦରେ ।
ବ୍ୟାଖ୍ୟାନ କଲୁ ଯୁବରାଜ ନ ଚିହ୍ନୁ ମୋତେ ବଂଶତେଷୁ ଥାଇ ॥
ବଣା ମୁଁ ଭେନ ତୁ କେଉଁ ରାବଣ ରାବଣ କରନ୍ତ ମୁହିଁ ସେ ।
ରଧା ପ୍ରହାର ଏକ୍ଷଣି । ରଭୁ ଆଜ୍ଞା ନାହିଁ ଶୁଣିରେ ॥"
(ବୈଦେହୀଶ ବିଳାସ—୪୧।୨୪-୨୫)

ଉପେନ୍ଦ୍ରଙ୍କ ବର୍ଣ୍ଣନା ଏଥିରେ କ୍ଳିଷ୍ଟ ହେଲେ ବି, ଅତ୍ୟନ୍ତ ଚମତ୍କାର ଓ ମନୋମୁଗ୍ଧକର । ପୁଣି ରାମ ରାବଣର ଯୁଦ୍ଧ ସମୟରେ ରାମଙ୍କର ବାମ ଓ ଡାହଣ ହାତର କଥୋପକଥନ ମହାନାଟକରେ ବର୍ଣ୍ଣିତ ହୋଇଛି ।

ରେ ରେ ଦକ୍ଷିଣ ହସ୍ତ ସପ୍ରତି ସଦା ଭୋକ୍ତୁଂଭବାନଗ୍ରଣୀ—
ର୍ଯୁଦ୍ଧେ ମାଂ ପୁରତୋ ନଧାସ୍ୟ ଭବତା କଂ ପୃଷ୍ଠତୋ ଗମ୍ୟତେ ।
ନୈବଂ ବାମ ଦସ୍ୟାନଧେ ରଘୁପତେରାଗତ୍ୟ କର୍ଣ୍ଣାନ୍ତକଂ
ପୂର୍ଣ୍ଣାମେ୍ୟକମସଶସ୍ତଂ ଦଶମୁଖୋ ବଧଃ ସ କ ବା ନ ବା
(ମହାନାଟକ ୯।୧୫୧)

ଉପେନ୍ଦ୍ର ଭଞ୍ଜଙ୍କ ବର୍ଣ୍ଣନାରେ:—

"ବ୍ୟାଘ୍ର କି ମକ୍ଷିକା ଗ୍ରାସେ ଲକ୍ଷ୍ମଣ ବାଣସନ୍ଧାନେ
ଖରଜିତ ବାମ ହସ୍ତ ଦକ୍ଷିଣ ବୋଲେ ।
ବିଦେହ କନ୍ୟା ଯୋଗରେ ଆଗ କର୍ପୂର ଦାନରେ
ଯୋଗ ହେଉ ପଛେ ଯାଉ ସମର କାଳେ ।
ବାମେ ସେହି । ଦକ୍ଷିଣ ପାଣିର ଛଳେ ।
ବିଦେହ କନ୍ୟା ଯୋଗରେ ଯୋଗେ କର୍ପୂର ଦାନରେ
ବଦେ କୃପାଳୁ ସମ୍ମତେ ଶ୍ରୁତିକି ଚଳେ ।"

ଏଠାରେ ଉପେନ୍ଦ୍ର ଭଞ୍ଜଙ୍କର କଳ୍ପନା ବୈଚିତ୍ର୍ୟ, ମୌଳିକତା ସମ୍ୟକ୍ ପରିଲକ୍ଷିତ ହୁଏ । ଯେଉଁଠି ମହାନାଟକରେ ଖାଇବା ବିଷୟରେ ଆଗ ଓ ଯୁଦ୍ଧ ବେଳରେ ପଛ ବୋଲି ବାମ ହସ୍ତ ଦକ୍ଷିଣ ହସ୍ତକୁ ମହାନାଟକରେ କହୁଛି, ସେଠି ବୈଦେହୀଶ ବିଳାସରେ ବାମ ହସ୍ତ ଦକ୍ଷିଣ ହସ୍ତକୁ କହୁଛି ଯେ, ମେ ସୀତାଙ୍କୁ ଗ୍ରହଣ କରିବାରେ ଓ ସୁବର୍ଣ୍ଣ ଦାନ କରିବାରେ ଆଗ; କିନ୍ତୁ ଯୁଦ୍ଧ ବିଷୟରେ ପଛ । ଏହାର ଉତ୍ତରରେ ଦକ୍ଷିଣ ହସ୍ତ କହୁଛି । "ରେ ବାମ ହସ୍ତ । ମୁଁ ଅବଶ୍ୟ ଖ୍ୟାତ ହୋଇ ପଶ୍ଚାତ୍ ପଦ ହେଉ ନାହିଁ । ସୀତାଙ୍କୁ ଉଦ୍ଧାର କରିବା ନିମନ୍ତେ ରାବଣକୁ ବିନାଶ କରିବି କି ନାହିଁ କୃପାଳୁ ରାମଚନ୍ଦ୍ରଙ୍କର ଶ୍ରୁତି ନିକଟକୁ ଯାଉଅଛି ।"

ଏହିପରି ଭାବରେ ଦେଖିବାକୁ ଗଲେ ଉପେନ୍ଦ୍ର ବୈଦେହୀଶ ବିଳାସ କାବ୍ୟରେ ଅନେକ ସ୍ଥଳରେ ମହାନାଟକ ଦ୍ୱାରା ପ୍ରଭାବିତ ହେଲେ ହେଁ ପ୍ରତି କ୍ଷେତ୍ରରେ ସାମାନ୍ୟ ବ୍ୟତିକ୍ରମ ସୃଷ୍ଟି କରି କଳ୍ପନାର ଯାଦୁକରୀ ସ୍ପର୍ଶରେ ତାକୁ ଅଭିନବ ରୂପ ପ୍ରଦାନ କରିଛନ୍ତି । ମହାନାଟକରେ ଅଛି—

"ଜନାମି ସୀତାଂଜନକପ୍ରସୂତାଂ ଜାନାମି ରାମଂ ମଧୁସୂଦନଂ ଚ ।
ଜନମ୍ୟହଂ ଗୃହ ନରସ୍ୟବ ଧ୍ୟାସ୍ତ ଆଁପି ସୀତାଂ ନ ସମର୍ପୟାମି ॥"
(ମହାନାଟକ—୯।୭୭)

ବୈଦେହୀଶ ବିଳାସରେ ଅନୁରୂପ ବର୍ଣ୍ଣନା ଦେବାକୁ ଯାଇ ଉପେନ୍ଦ୍ର ଲେଖିଛନ୍ତି:—

ବଡ଼ ପାତକୀ ଆତଙ୍କୀ ମୁଁ ସୀତା ଆଣିଛି ଯେ
ବୋଇଲା । ବିଶ୍ୱ-ଚତୁରଲପନ କଳପନା ଜାଣେ ଯେ
ବ୍ରହ୍ମ ପ୍ରଳୟରେ ତାର କ୍ଷୟ ହୁଏ ପୁଣ ଯେ
ବୋଇଲା । ବ୍ୟତପନ୍ନ ଆୟୁଷ ଛପନ ଗଣ୍ଡା ଯୁଗ ଯେ
ବାହୁଡ଼ାଇ ହୁଡ଼ିବ କି ଏଡ଼େ ଶୁଭ ଯୋଗ ଯେ
(ବୈଦେହୀଶ ବିଳାସ ୯୮।୭୬-୭୭)

ବର୍ତ୍ତମାନ ବହୁଦର୍ଶୀ ଉପେନ୍ଦ୍ର କିପରି ଭାବରେ ଭାରବୀଙ୍କ କୃତ କାବ୍ୟ ଗ୍ରନ୍ଥରୁ ଆହରଣ କରିଛନ୍ତି ଦେଖାଯାଉ । କୁହାଯାଇଛି । "ଭାରବେରର୍ଥ ଗୌରବମ୍" । ପୁଣି ମଧ୍ୟ କୁହାଯାଇଛି:—

"ନାରିକେଳ ଫଳସମ୍ମିତଂ ବଚୋ ଭାରବେଃ ସପଦି ତଦ୍ ବିଭଜ୍ୟତେ
ସ୍ୱାଦୟନ୍ତୁ ରସଗର୍ଭନିର୍ଭରଂ ସାରମସ୍ୟ ରସିକା ଯଥେପ୍ସିତମ୍ ।"

ଏହି କବି ଭାରବୀଙ୍କର କୃତ "କିରାତାର୍ଜ୍ଜୁନୀୟମ୍" ଦ୍ୱାରା ଭଞ୍ଜ ଗଭୀର ଭାବରେ ପ୍ରଭାବିତ । ଏହାର ପୁଷ୍କରିଣୀ ବର୍ଣ୍ଣନା, ବନବର୍ଣ୍ଣନା, ନଗର ବର୍ଣ୍ଣନା ଓ ରୂପ ବର୍ଣ୍ଣନା ଅଳଙ୍କାର ପ୍ରଭୃତିର ପ୍ରଭାବ ଭଞ୍ଜଙ୍କ ଉପରେ ସ୍ପଷ୍ଟ ପ୍ରଭାବ ବିସ୍ତାର କରିଛି । "କିରାତାର୍ଜ୍ଜୁନୀୟ" କାବ୍ୟରେ ଭାରବୀ ଲେଖିଛନ୍ତି:—

"ବିପତ୍ରଲେଖା ନିରଲକ୍ତକାଧରା ନିରଞ୍ଜନାକ୍ଷୀରପି
ବିଭ୍ରତୀଃ ଶ୍ରିୟମ୍,

ନିରୀକ୍ଷ୍ୟ ରାମା ବୁବୁଧେ ନଭଶ୍ଚରୈରଳଂକୃତଂ
ତଦ୍‌ବପୁଷୈବ ମଣ୍ଡନମ୍"

(କିରାତାର୍ଜ୍ଜୁନୀୟମ୍—୮।୪୦)

"ଏହି ଶ୍ରୀ ଅଙ୍ଗକୁ ଛୁଇଁ । ରତନ ସତନ ହୋଇ
ମହା ଅଦଭୁତ ପ୍ରଶଂସା ସଂସାର ଭୂଷଣ ଅଛନ୍ତି ପାଇ ।"

(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ-୧୪।୭)

ଏଠାରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ସ୍ୱାଭାବିକ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାରେ ଭାରବୀଙ୍କ ଛାୟା ପ୍ରାୟ ଭଞ୍ଜଙ୍କ ଉପରେ ପଡ଼ିଛି । ପୁଣି ଦେଖନ୍ତୁ, ଆଳଙ୍କାରିକତାର ପ୍ରଭାବରେ ଭଞ୍ଜ କିପରି ଭାରବୀଙ୍କ ଦ୍ୱାରା ପ୍ରଭାବିତ ।

"ନନୁ ହୋ ମଥନା ରାଘୋ ଘୋର ନାଥମହୋନୁନ ।
ତୟଦାତବଦା ଭୀମା ମାଭୀଦା ବତ ଦାୟତ ॥"

(କିରାତାର୍ଜ୍ଜୁନୀୟମ୍-୧୫।୨୦)

ଭଞ୍ଜଙ୍କର ସୁଭଦ୍ରା ପରିଣୟରେ ଅନୁରୂପ ଅଳଙ୍କାର ଦେଖିବାକୁ ମିଳେ ।

"ସରିନାହିଁ କାଳ କାହିଁ ନାରୀଶ
ସଦା ତୋ ମୂଦହୃଦ ମୁଁ ତୋ ଦାସ ।"

(ସୁଭଦ୍ରା ପରିଣୟ-୧୧।୮)

ଭାରବୀଙ୍କ ପର ଏଠାରେ ଲୋମବିଲୋମ ଅଳଙ୍କାର ଭଞ୍ଜ ପ୍ରୟୋଗ କରିଅଛନ୍ତି । ପୁଣି ଭାରବୀଙ୍କ ଗୋମୂତ୍ରିକା ଦ୍ୱାରା ଭଞ୍ଜ ସ୍ପଷ୍ଟ ପ୍ରଭାବିତ ।

"ନା ସୁ ରୋସ୍ତୁଂ ନ ବା ନା ଗୋ ଧର ସଂସ୍ତୋ ନ ରକ୍ଷସଃ
ନାସୁ ଖୋସ୍ତୁଂ ନ ବା ଭେ ଗୋ ଧରଣି ସ୍ତାନ୍ତି ରାଜସଃ ।"

ଭଞ୍ଜଙ୍କର:—

ବାଜି ବାଣହୃତ ଘାତ କୁନ୍ତ ପାତଗର୍ତ୍ତି ଶବ ବାପାରନ୍ତି
ବାଜି ଗଣ ପାଦ ଧୃତ ହତ ଚେତ ଆର୍ତ୍ତ ରବ ସାର୍ଦ୍ଦପାବନ୍ତି (ବୈ-୪୯)

ଏଣୁ ଭାରବୀଙ୍କ ଚିତ୍ର କାବ୍ୟ, ନାମକ, ଅନୁପ୍ରାସ, ଏକାକ୍ଷର ପ୍ରଭୃତିରେ ଭରା କିରାତାର୍ଜ୍ଜୁନୀୟ ୧୫ ସର୍ଗ ଦ୍ୱାରା ଭଞ୍ଜ ବିଶେଷ ଭାବରେ ପ୍ରଭାବିତ ।

ବର୍ତ୍ତମାନ ମାଘଙ୍କ ଶିଶୁ-ପାଳ ବଧ କାବ୍ୟ ଦ୍ୱାରା କବି ଉପେନ୍ଦ୍ର ଭଞ୍ଜ କିପରି ପ୍ରଭାବିତ ଦେଖିବାର କଥା । ମାଘ ଲୋମ-ବିଲୋମ ଓ ମେଷଯୁଦ୍ଧ ଅଳଙ୍କାରରେ ବର୍ଣ୍ଣନା କରି ଲେଖିଛନ୍ତି:—

"ବାରଣାଗା ଗଭୀରା ସା ସାରଭୀ ଗଗଣାରବା
କରି ତାରି ବଧା ସେ ନା ନା ସେ ଧା ବାରିଣରିକା ।"

(ଶିଶୁପାଳ ବଧ—୧୯।୪୪)

ଭଞ୍ଜ ମଧ୍ୟ ଏହିପରି ଲୋମ-ବିଲୋମ ଓ ମେଷ ଯୁଦ୍ଧ ଅଳଙ୍କାର ଦେବାକୁ ଯାଇ ଲେଖିଛନ୍ତି:—

"ବରଦ ବରସ ନବ ସାର ବଦରବ
ବଧ ମାନ କରତ ତରଜନ ମାଧବ ।"

(ବୈଦେହୀଶ ବିଳାସ—୧୯।୩୩)

ମାଘ ଯମକ ଓ ପଦ ଲାଳିତ୍ୟର ପରିଚୟ ଦେବାକୁ ଯାଇ ଲେଖିଛନ୍ତି:—

ନବପଳାଶ ପଳାଶବନଂ ପୁରଃ ସ୍ଫୁଟ ପରାଗ ପରାଗତ ପଙ୍କଜମ୍
ମୃଦୁ ଲତାନ୍ତ ଲତାନ୍ତ ମଲୋକୟତ୍ ସ ସୁରଭିଂ ସୁରଭିଂ ।

ଉପେନ୍ଦ୍ର ମଧ୍ୟ ମାଳ ଯମକ ଓ ପଦ ଲାଳିତ୍ୟର ପରିଚୟ ଦେବାକୁ ଯାଇ ଲେଖିଛନ୍ତି—

ବୃଷଭାନୁ ଭାନୁ ଭାନୁ ପ୍ରଭା ତାପ ନାହିଁ ।
ବୃତ ତମାଳମାଳ ମାଳତୀ ଲତା ନାହିଁ ଯେ ।"

(ବୈଦେହୀଶ ବିଳାସ—୧୯।୧୨)

ମାଘ ଦ୍ୱକ୍ଷର ଅନୁପ୍ରାସ ଅଳଙ୍କାର ପ୍ରୟୋଗ କିପରି କରିଛନ୍ତି ଦେଖାଯାଉ ।

ବରବୋଃ ଵବବୋ—ବୈର ଵବାଶ୍ବ ବାର ଗାରବଃ
ଵବବାର ବବୋ ବୈରଂ ଵବୋରବ ଶବୈର୍ବରଃ

ଭଞ୍ଜଙ୍କର:—"ଦେଖି ନବକାଳିକା ବକାଳିକା ମାଳିକା"
ଆଳୀ କାଳିକା କାନ୍ତ ସ୍ମର

(ଲାବଣ୍ୟବତୀ—୭୨।୧)

ଭଞ୍ଜଙ୍କର ସମସ୍ତ କାବ୍ୟ ଗ୍ରନ୍ଥ ଅନୁଶୀଳନ କଲେ ଜଣାଯାଏ ଯେ ଭଞ୍ଜ ଗଭୀର ଭାବରେ ନୈଷଧକାର ଶ୍ରୀହର୍ଷଙ୍କ ଦ୍ୱାରା ପ୍ରଭାବିତ ହୋଇଅଛନ୍ତି । କୁହାଯାଇଥାଏ—

"ଉପମା କାଳିଦାସସ୍ୟ ଭାରବେରର୍ଥ ଗୌରବମ୍
ଦଣ୍ଡିନଃ ପଦଲାଳିତ୍ୟଂ ମାଘେ ସନ୍ତି ତ୍ରୟୋଗୁଣାଃ
ତାବଦ୍ଭାଃ ଭାରବେର୍ଭାତି ଯାବନ୍ମାଘସ୍ୟ ନୋଦୟଃ
ଉଦିତେ ନୈଷଧେ କାବ୍ୟେ କ୍ୱ ମାଘଃ କ୍ୱ ଚ ଭାରବିଃ ।"

ନୈଷଧ ଅତ୍ୟନ୍ତ ପାଣ୍ଡିତ୍ୟ ପୂର୍ଣ୍ଣ କାବ୍ୟ, ପାଣ୍ଡିତ୍ୟ ପ୍ରାଚୁର୍ଯ୍ୟ, ବର୍ଣ୍ଣନା ବୈଚିତ୍ର୍ୟ, ଭାବଗାମ୍ଭୀର୍ଯ୍ୟ, ଶବ୍ଦାଡ଼ମ୍ବର, ଅଳଙ୍କାର, ରୀତି, ରସ, ଧ୍ୱନି, ବ୍ୟଞ୍ଜନା ଓ ଲକ୍ଷଣା ନେଇ । ଏଣୁ ଏ କାବ୍ୟ ପଣ୍ଡିତମାନଙ୍କ ଦୃଷ୍ଟିରେ ଶ୍ରେଷ୍ଠ ସ୍ଥାନ ସଂସ୍କୃତ ସାହିତ୍ୟ କ୍ଷେତ୍ରରେ ଅଧିକାର କରି ବସିଛି । ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟଙ୍କ ଭାଷାରେ କହିବାକୁ ଗଲେ:—

ଉପେନ୍ଦ୍ର ଭଞ୍ଜ କାବ୍ୟ ସୃଷ୍ଟିରେ ପ୍ରାରମ୍ଭରୁହିଁ ନୈଷଧ କାବ୍ୟକୁ ନିଜର ସୃଷ୍ଟିର ଆଦର୍ଶ ରୂପେ ଗ୍ରହଣ କରି ଆସିଛନ୍ତି । କିନ୍ତୁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ନୈଷଧର ପ୍ରଭାବ ଭିନ୍ନ ରୂପ ନେଇଛି । ସେନେହୁଏ ଜୀବନୀ ଶକ୍ତି (Spirit)କୁ ସ୍ପଷ୍ଟ ଉପଲବ୍ଧି କରି ସ୍ୱକାବ୍ୟକୁ ଅନୁରୂପ ଜୀବନୀ ଶକ୍ତି ଦ୍ୱାରା ପ୍ରାଣବନ୍ତ କରିବା ନିମିତ୍ତ ଚେଷ୍ଟା କରିଛନ୍ତି । ଏଠାରେ ନୈଷଧ ଶ୍ଳୋକ ବା ଭାବ, କବିକୁ ଅନୁପ୍ରାଣିତ କରିପାରି ନାହିଁ; କରିଛି ଆଙ୍ଗିକ ତଥା ଆତ୍ମିକ ବୈଶିଷ୍ଟ୍ୟ, ଏ ଜୀବନ ଶକ୍ତିର ସନ୍ଧାନ ଲାଭ କରି ପାରିଥିଲେ

ବୋଲନ୍ତି, ବୋଧହୁଏ ଉପେନ୍ଦ୍ର ଭଞ୍ଜ, ଏଭଳି ଦୃଢ଼ ଭାବରେ ନିଜର ଘୋଷଣା (ଯେନ ନୈଷଧେ ପରିପ୍ରେ) ପ୍ରକାଶ କରିପାରି ଅଛନ୍ତି ।"

(ସ୍ରଷ୍ଟା ଓ ସୃଷ୍ଟି)

ନୈଷଧର ଏହି ପ୍ରାଣ ଶକ୍ତି ଏବଂ ବୈଶିଷ୍ଟ୍ୟ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟକୁ କିପରି ପ୍ରଭାବିତ କରିଛି ତାହା ଦେଖିବାର କଥା । ଶ୍ରୀ ହର୍ଷଙ୍କ ଭାଷାରେ:—

"ପ୍ରକ୍ଷେପ୍ତୁ-ଣ୍ଣି କୁରେଷ୍ଟ ତେ ଶରଚୟଂ ସ୍ଵଂ ଭାଲମୂଳେ ଧନୁ
ରୌଦ୍ରେ ଚଷଷି ଯନ୍ତ୍ରିତ ସ୍ତନୁମନୁ ଭ୍ରାସ୍ତୁଂଚ ଯଷ୍ଟି ଷି ଯେ
ନିର୍ବିଦ୍ୟାଶ୍ରିପୃଦାଶ୍ରମଂ ସ ବିତନୁସ୍ତ୍ୟାଂ ତନ୍ମଧ୍ୟା ପାଧୁନା,
ପଦ୍ମାଳସ୍ତ୍ୟ ଦୁରେୋକଶୈଳନଳସ୍ଥା ତତ୍‌ପର୍ଣ୍ଣଶାଳାୟତେ ।"

(ନୈଷଧ—୩।୧୨୮)

ଭଞ୍ଜ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଅଙ୍ଗ ବର୍ଣ୍ଣନାରେ ଉଲ୍ଲେଖ କରିଅଛନ୍ତି:—

"ମନସିଜ ବେନି କୁଟି ଭିଆଇ
ପଦ୍ମାବଳୀରେ ଯତନେ ଥୁଆଇ
ରଞ୍ଜକ ଖ୍ୟାତ ନଳୀ ଅଛି ଯୋଖି
ମନୋହର ନାଭି-ପଲ୍ଲବ ଦେଖି
ମଧ୍ୟରେ କେଶରୀ ବୋଲି ଯେ
ଭିନ୍ନେ ଶଢ ଅଛି କାହିଁ ପଳାଇଛି
ମୁହିଁ କଟି ହେଷୀ ଭାଳି ଯେ ।"

(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ୬।୧)

ଏଠାରେ ବର୍ଣ୍ଣନାରେ ସାମାନ୍ୟ ବ୍ୟତିକ୍ରମ ଦେଖା ଦେଇଛି । ଏହିପରି "ସାମାନ୍ୟ ବ୍ୟତିକ୍ରମରେ ଅଜସ୍ର ଉଦାହରଣ ଦିଆଯାଇ ପାରେ । ପୁଣି ନୈଷଧର ଶ୍ଳୋକ:—

ରୋମାବଳୀ-ରଜ୍ଜୁମୂଳେ୍କକୁମ୍ଭୌ ଗମ୍ଭୀରମାସାଦ୍ୟ ଚ
ନାଭିକୂପମ୍
ମଦ୍‌ବୃଷ୍ଟି ତୃଷ୍ଣା ବିରମେଦ୍ୟଦ ସ୍ୟାନ୍ନୈଷାଂ ବଟେଷା
ସ୍ଥିରପୁନେ ଗୁଣ୍ଠିଃ ।
(ନୈଷଧ—୭।୮୪)

ଉଦ୍‌ଗୁଳ୍ପାବଳ ମୌକ୍ତିକାନ ଗୁଟିକାସ୍ତଂ ରାଜହଂସଂ ବଭ୍ରେ-
ବେଧ୍ୟଂ ବଦ୍ଧି ମନୋଭୁବଃ ସ୍ୱମପି ତାଂ ମଞ୍ଜୁଂ ଧନୁର୍ମଞ୍ଜରୀମ୍
ସନ୍ଧିତ୍ୟାଙ୍କନବାସ ଲ୍ଲକତେମଭ୍ୟେ ଭ୍ରୂଜ୍ୟମାନଂ ଲସ-
ନ୍ନାଭିମଧ୍ୟବଳା ବଳାସମଖିଳଂ ରୋମାଳବ୍ଲମ୍ବତେ ।
(ନୈଷଧ – ୩।୧୨୭)

ସହିତ ଉପେନ୍ଦ୍ର ଭଞ୍ଜଙ୍କର କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ସ୍ତନ, ରୋମାବଳୀ, ନାଭି, ଉଦର ପ୍ରଭୃତି ବର୍ଣ୍ଣନା ଦ୍ରଷ୍ଟବ୍ୟ ।

"ଥପୂ ନ ପାଇ ଦୃଷ୍ଟି ତହୁଁ ଖସି ଉରଜ ଉପରେ ପଡ଼ିଲା ଆସି
ରୋମାବଳୀ ଦଣ୍ଡ ଅବଲମ୍ବନେ । ରହି କହିଲେ କେତେ ଅନୁମାନେ ସେ ।
ଏ ଅତି ଅଦ୍ଭୁତ ସ୍ଥଳୀ ଯେ

× × × ×

ମାଳା ଭେଳା କରିବାକୁ ବଢାଉ । ଅବଗାହ ଅର୍ଥେ ଉଦର ସର ସେ ।"
(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ—୭।୧୭-୧୮)

ନୈଷଧକାର ନଳଙ୍କର ଶିକ୍ଷା ବିଷୟରେ ପରିଚୟ ଦେବାକୁ ଯାଇ ପ୍ରକାଶ କରି ଅଛନ୍ତି:—

"ଅମୁଷ୍ୟ ବିଦ୍ୟା ରସ ନାଗ୍ର-ନର୍ତ୍ତକୀ
ତ୍ରୟୀବ ନୀତାଙ୍ଗ-ଗୁଣେନ ବନ୍ଧୁରମ୍ ।
ଅଗାଧତାଷ୍ଟା-ଦଶତାଂ ଜଗୌଶ୍ୱର୍ଯ୍ୟ
ନବଦ୍ୱୟ୍ୟ ଦ୍ୱୀପ ପୃଥଗ୍ ଜୟଶ୍ରିୟମ୍ ।" (ନୈଷଧ-୧।୫)

ଭଞ୍ଜ ନୈଷଧର ଅନୁରୂପ ବର୍ଣ୍ଣନା ଦେଇନଥିଲେ ହେଁ ପୁଷ୍ପକେତୁର ପାଣ୍ଡିତ୍ୟ ନୈଷଧୀୟ ଶୈଳୀରେ ରଚନା କରିବାକୁ ଯାଇ କହିଅଛନ୍ତି—

"କର୍ତ୍ତା ପର ବ୍ୟାକରଣ । ପାଣିନୀୟ ମନେ ଗୁଣ ॥
କଣବା ଏହା ସଙ୍ଗତ । ହେବ ବ୍ୟୁତ୍ପତ୍ତି ଯେ ॥
ମୀମାଂସା ବେଦ ବେଦାନ୍ତେ । ଟୀକା ପୁସ୍ତକ ଏ ସତେ ॥
ଜୈମିନି ବଖାନ ବ୍ୟାସ । ପ୍ରଶଂସି ତୋଷ ଯେ ॥"

(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ—୦।୩୦-୩୨)

ଆଉ ଅଧିକ ଉଦାହରଣ ଦେବା ଅନାବଶ୍ୟକ । ଏହାପରି ଦେଖିବାକୁ ଗଲେ ଉପେନ୍ଦ୍ର ଭଞ୍ଜ ନୈଷଧକାରଙ୍କ ନଳଙ୍କର ଭୁଜ ଓ ବକ୍ଷ ବର୍ଣ୍ଣନା, ଯୁଦ୍ଧ କାଳୀନ ଘୋଟକ ଖୁରୋତ୍‌ଥିତ ଧୂଳିର ବର୍ଣ୍ଣନା, କୁଣ୍ଡିନ ନଗରୀର ବର୍ଣ୍ଣନାର ଶୈଳୀରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ପୁଷ୍ପକେତୁଙ୍କ ବକ୍ଷ ବର୍ଣ୍ଣନା, ଚମ୍ପାନଗରୀର ରାଜାଙ୍କର ଶୌର୍ଯ୍ୟ, ବୀର୍ଯ୍ୟ ବର୍ଣ୍ଣନା ସହ ପ୍ରାସାଦ, ନଗରୀ, ବିପଣି, କେଳି ଉପବନ ଓ ଚମ୍ପାନଗରୀର ବର୍ଣ୍ଣନା କରିଅଛନ୍ତି । ବର୍ତ୍ତମାନ ସୁଭଦ୍ରା ପରିଣୟ, ଲାବଣ୍ୟବତୀ ପ୍ରଭୃତି କାବ୍ୟରେ ନୈଷଧର ପ୍ରଭାବ କିପରି ଭାବରେ ପଡ଼ିଛି ଦେଖିବାର କଥା । ନୈଷଧରେ ବର୍ଣ୍ଣିତ ହୋଇଛି:—

"ଅଧିତ କାପି ମୁଖେ ସଲିଲଂ ସଖୀ-ପ୍ୟଧିତ କାପି
ସୁରୋଜଦଳୈଃ ସ୍ତନୌ ।
ବ୍ୟଧିତ କାପି ହୃଦି ବ୍ୟଜନାନିଲଂ ନ୍ୟଧିତ କାପି ହିମଂ ।
ସୁତନୋସ୍ତନୌ

(ନୈଷଧ — ୪।୧୧୧)

ପୁନଶ୍ଚ—

"ଉପଚଚାର" ଚିରଂ ମୃଦୁଶୀତଳୈର୍ଜଳ ଜଜାଲ ମୃଣାଳ ଜଳାଦିଭିଃ ।
ପ୍ରିୟସଖୀ ନିବହଃ ସ ତଥା ଯମାଦୟମବାପ ଯଥା ଲଘୁ ଚେତନାମ୍ ॥

(ନୈଷଧ—୪।୧୧୨)

ଏହାର ଅନୁରୂପ ବର୍ଣ୍ଣନା ଦେବାକୁ ଯାଇ ଉପେନ୍ଦ୍ର ଭଞ୍ଜ ସୁଭଦ୍ରା ପରିଣୟରେ ଲେଖିଛନ୍ତି—

"ସଙ୍ଗ୍ଯା ବୁଡ଼ିଲା କଣ୍ଠ ଦୂରେ
ସଖିଏ ଆଉଜାଇ ଉରେ
ସିଞ୍ଚିଲେ ଚନ୍ଦନରେ ସଲିଳ ଅଞ୍ଚଳରେ
ବିଞ୍ଚିଲେ ସଧୀରେ ସଧୀରେ
ସେ ସୁକୁମାରୀ ।"

(ସୁଭଦ୍ରା ପରିଣୟ—୮।୪)

ପୁଣି:—

"ସଙ୍ଖୋଳି ଗଲେ କଣ୍ଠଦେଶ ଉପରୁ ସୁଭଦ୍ରାଙ୍କୁ ଶରବତୀ,
ସେ ଯେ ଶୋଇଛନ୍ତି ପଦ୍ମ ପତ୍ର ଶେଯେ,
ସଧୀରେ ସଧୀରେ ବିଞ୍ଚୁଛନ୍ତି ସଖୀ ନବପଲ୍ଲବ ସମାଜେ ।"

(ସୁଭଦ୍ରା ପରିଣୟ—୯।୧)

ନୈଷଧକାର ଲେଖିଛନ୍ତି:—

ବଦ୍ଧ କମ୍ବୁମଣିବଳୟାଙ୍କିତାଂ—ଗଣନାର୍ଥତ୍ କର କଳଚୋତ୍କରଃ ।
ହିମ ବାଲୁକୟାଽଙ୍କକାଲୁକଃ ଷଟ୍ଟୁ ଦଧ୍ମାନ ଯଦାପଂଣାର୍ଣ୍ଣବଃ ॥
(ନୈଷଧ—୨।୮)

ସିତଦୀପ୍ରମଣି ପ୍ରକଲ୍ପିତେ ଯଦଗାରେ ହସଦଙ୍କ ରୋଦସି ।
ନଶିଳାନ୍ନିଶି ପୂର୍ଣ୍ଣିମା ତିଥୀନୁପତସ୍ଥେଽତିଥିରେ କବା ତିଥିଃ ॥
(ନୈଷଧ—୨।୭୬)

ଶ୍ରୀହର୍ଷଙ୍କର ଏହି ବର୍ଣ୍ଣନାରେ ପ୍ରଭାବିତ ହୋଇ ଉପେନ୍ଦ୍ର ଭଞ୍ଜ ଲାବଣ୍ୟବତୀ କାବ୍ୟରେ ସିଂହଳର ଐଶ୍ୱର୍ଯ୍ୟ ଓ ସମୃଦ୍ଧି ବର୍ଣ୍ଣନା କରି ଲେଖିଛନ୍ତି:—

"କହିବାର ନୋହେ ସେ କଟକ ଛଟକକୁ,
ରତନ ଝଟକ ହସେ ଆନ କଟକକୁ ,
× × ×
କୁଙ୍କୁମ ଉକୁଟାଇ ହୁଅନ୍ତି ନାଗ ଯହିଁ
ହରିଦ୍ରାରେ ଆଦର କରିବେ କାହିଁ ପାଇଁ ?
ମାର୍ଗ ମାର୍ଜନେ ରଜନକର ଆଣି ଯାଇ
ରଜମାକର ଆଣନ୍ତି ଶକଟରେ ବହି ।"

(ଲାବଣ୍ୟବତୀ—୨ ଛାନ୍ଦ)

ବୈଦେହୀଶ ବିଳାସ କାବ୍ୟରେ ନୈଷଧର ପ୍ରଭାବକୁ ଏଡ଼ି ନ ପାରି ଉପମା ଅଳଙ୍କାର ପ୍ରୟୋଗରେ କହିଅଛନ୍ତି:—

"ବାଗ୍‌ସନ ନଳପ୍ରାପ୍ତ ନିଷେଧ ଅଧିପ,
ବାକ୍‌ବାରେ ସ୍ୱକବାଦ୍ୟ ସାଧି ସ୍ୱରୂପ ।"

(ବୈଦେହୀଶ ବିଳାସ—୨।୬)

ଏହିପରି ଭାବରେ ଦେଖିବାକୁ ଗଲେ ଉଞ୍ଜ ପ୍ରତ୍ୟକ୍ଷ ଭାବରେ ନୈଷଧ କାବ୍ୟ ଦ୍ୱାରା ପ୍ରଭାବିତ । ନୈଷଧ କାବ୍ୟ ଉପରେ କହିବାକୁ ଯାଇ ଅଧ୍ୟାପକ ଶ୍ରୀ ଦାଶରଥି ଦାସ କହିଛନ୍ତି—

"ସେହି ଯୁଗର ସର୍ବଶ୍ରେଷ୍ଠ କବି ଶ୍ରୀହର୍ଷ ଓ ତାଙ୍କର ରଚନା ହିଁ ସର୍ବଶ୍ରେଷ୍ଠ କାବ୍ୟ । ନୈଷଧ ସେ ଯୁଗର ସର୍ବଶ୍ରେଷ୍ଠ ରଚନା । ସେଥିରେ ଅଛି ବିପୁଳ ପାଣ୍ଡିତ୍ୟ ଓ କ୍ଲିଷ୍ଟ କଳ୍ପନାର ଇନ୍ଦ୍ରଜାଲ । ସେ ଯୁଗର ଅକୁଣ୍ଠିତ ଶ୍ରଦ୍ଧା ଓ ଅକୃପଣ ସମ୍ବର୍ଦ୍ଧନା ତାହା ଶିରରେ ଅବାରିତ ଝରିଛି । ତାର ଉଦୟ ଉତ୍ସବରେ ମାଘ ଓ ଭାରବି ନିସ୍ତେଜ ହୋଇ ପଡ଼ିଛନ୍ତି ।"

୧ । ନୈଷଧ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ରୂପବିଭ କାଶଭଞ୍ଜ ଓ

୨ । ଉଞ୍ଜୀୟ କାବ୍ୟ ଶ୍ରୀ "ଉଦିତେ ନୈଷଧେ କାବ୍ୟେ କ୍ୱ ମାଘଃ କ୍ୱ ଚ ଭାରବିଃ ।"

ସେଠ ତାର ଅର୍ଥ ଗୌରବର ଓ ପଦ ଲାଳିତ୍ୟର ପଟାନ୍ତର ନାହିଁ । ସେହିପରି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ଓଡ଼ିଆ ସାହିତ୍ୟରେ ପଟାନ୍ତର ନାହିଁ । ଏହାର ଶବ୍ଦ ପାଣ୍ଡିତ୍ୟ, ଭାବଗାମ୍ଭୀର୍ଯ୍ୟ, ଆଲଙ୍କାରିକତା, ଶୃଙ୍ଗାର ରସ, ହାସ୍ୟ ରସ, ବକ୍ର ବାକ୍ୟ, ରଚନା, ରସାଳ ବର୍ଣ୍ଣନା ପ୍ରଭୃତି ନୈଷଧୀୟ ଛଟାରେ ଲିଖିତ । ଅଧ୍ୟାପକ ଦାଶରଥି ଦାସଙ୍କ ଭାଷାରେ:—"ନୈଷଧ କାବ୍ୟର ଆଙ୍ଗିକ ଓ

ପ୍ରାଣ ଧର୍ମ ଭଞ୍ଜ ସାହିତ୍ୟର ଗତି ପ୍ରକୃତିକୁ ନିଷ୍ଠୁର ଭାବରେ ନିୟନ୍ତ୍ରଣ କରିଛି । ତେଣୁ ଠାଏ ଠାଏ କାଳିଦାସଙ୍କ ଅସ୍ପଷ୍ଟ ପଦପାତ ଶୁଣିବାକୁ ମିଳିଥିଲେ ହେଁ, ନୈଷଧର ଗୁରୁଗମ୍ଭୀର ବିଜୟ ଉତ୍ସବରେ ସେତକ ସହଜରେ ଉପେକ୍ଷା କରାଯାଇ ପାରେ । କିନ୍ତୁ ବାଣ-ଭଟ୍ଟଙ୍କ ଭଙ୍ଗୀ ବୈଚିତ୍ର୍ୟର ସାହିତ୍ୟ-ସ୍ରୋତକୁ ଅଜସ୍ର ଆଶୀର୍ବାଦ ବାରିରେ ମୁଗ୍‌ଧ କରି ଦେଇଥିଲେ ।

ବାଣ ପ୍ରତିଭାର ସ୍ପନ୍ଦନ ତେଣୁ ଉପେନ୍ଦ୍ରଙ୍କ କାବ୍ୟ ରାଜ୍ୟରେ ସ୍ୱାଭାବିକ ଭାବରେ ଜାଗ୍ରତ । ବାଣଭଟ୍ଟ ଯେପରି କହିଥିଲେ:—

"ସ୍ଫୁରତ୍ କଳାଳାପ ବିଳାସ କୋମଳା
କରୋତି ରାଗଂ ହୃଦି କୌତୁକାଧିକମ୍,
ରସେନ ଶଯ୍ୟା ସ୍ୱୟମଭ୍ୟୁପାଗତା
କଥା ଜନସ୍ୟାଭିନବା ବଧୂରିବ ।"

ଉପେନ୍ଦ୍ର ଠିକ୍ ତାଙ୍କର ପରି କାବ୍ୟ ରୂପ ଦେବାକୁ ଯାଇ କହିଥିଲେ:—

"ମୂର୍ତ୍ତିବନ୍ତ କରି ମୃଦୁଗୀତ ବର୍ଣ୍ଣରଇ
ଏଣୁ କରିଥିବ ଅଳଙ୍କାର ଯୁକ୍ତ ହୋଇ
ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥୀଜନ ପ୍ରବରଙ୍କୁ ଆନନ୍ଦ କରିବ ।"

(ଲାବଣ୍ୟବତୀ—୧।୭-୮)

"ବାଣଭଟ୍ଟ ଓ ଉପେନ୍ଦ୍ର- ଦୁହେଁ ଶବ୍ଦ ସମ୍ରାଟ । × × ତେଣୁ ଦୁହେଁ କାବ୍ୟ ରାଜ୍ୟରେ ପାଞ୍ଚାଳୀ ଶୈଳୀର କବି ବୋଲି ମନେହୁଏ । × × ବାଣଭଟ୍ଟ ଓ ଉପେନ୍ଦ୍ର ଶବ୍ଦର ଯାଦୁ ଶକ୍ତି

ସମ୍ପର୍କରେ ସଚେତନଥିଲେ । ଛନ୍ଦର ବିଚିତ୍ର ଗତି ଛନ୍ଦରେ ଯେତେ ମଞ୍ଜୁଳ ପ୍ରବାହ ସମ୍ଭବ ହୋଇପାରେ, ଯେତେ ଭାବବ୍ୟଞ୍ଜନା ରହିପାରେ, ଯେତେ ବସ୍ତୁସମ୍ବନ୍ଧ ଆନନ୍ଦ ସଞ୍ଚାର କରାଯାଇ ପାରେ; ତାର ସ୍ପୃଷ୍ଟସ୍ୱରୂପ ପ୍ରକଟନ କରିବାକୁ ଦୁହେଁ ସଂସ୍କୃତ ଆଳଙ୍କାରିକ ରୀତିରେ ନିଜର ସମସ୍ତ ଶକ୍ତି ପ୍ରୟୋଗ କରିଛନ୍ତି । ସମସ୍ତ କାବ୍ୟକୁ ମାଧୁର୍ଯ୍ୟ, ଗାମ୍ଭୀର୍ଯ୍ୟ ତଥା ଧ୍ୱନି-ପ୍ରତିଧ୍ୱନିରେ ପରିପୂର୍ଣ୍ଣମାଣ କରି ଦେଖିବାର ପ୍ରବଳ ଆଗ୍ରହ ଦୁହିଁଙ୍କ କାବ୍ୟରେ ସର୍ବତ୍ର କ୍ରିୟାଶୀଳ ।" (୧)

ଏହା ବ୍ୟତୀତ କବି ନାନା ଉଦ୍ଭଟ ଓ କବିକୃତ ଶ୍ଳୋକ ଦ୍ୱାରା ମଧ୍ୟ ପ୍ରଭାବିତ । ଯଥା ।

"କାର୍ତ୍ତିକେ ମାସି ଯୋ ଦଦ୍ୟାତ୍ ପ୍ରଦୀପଂ ସର୍ପବାଦନା
ଆକାଶେ ମଣ୍ଡପେ ବାପି ସଗୃକ୍ଷପୁଫଳଂ ଲଭେତ୍ ।"

ଉପେନ୍ଦ୍ର ପ୍ରେମ ସୁଧାନିଧି କାବ୍ୟରେ ଲେଖିଛନ୍ତି:—

"ରସିକ ବଗୃର କରେ, ଦୀପଦାନ କାର୍ତ୍ତିକରେ ।"

(ପ୍ରେମ ସୁଧାନିଧି—୭।୧)

"ହରି ନଖର ବିମୁକ୍ତା ଚକ୍ତ ରକ୍ତେନମୁକ୍ତା
ପରିଣତ ବଦରୀଣିଚ୍ଛାଦରେ ଶୋଭ ଗୃହ୍ୟ
ସପଦ୍ମ ସରସୀ ଧୌତ୍ୱା ସ୍ନାତ୍ୱ ବଜ୍ଞାସୁ ମୁକ୍ତା
ପରି କରଶ୍ଚ କଦୀଳ ହନ୍ତ କାନ୍ତାର ମଧେ ।"-ର ପ୍ରଭାବ

ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀ କାବ୍ୟର ସିଂହଳ ବର୍ଣ୍ଣନା ଉପରେ ପଡ଼ିଅଛି । ପୁନଶ୍ଚ:—

୧ । ବାଣଭଟ୍ଟ ଓ ଭଞ୍ଜୀୟ କାବ୍ୟ ଶ୍ରୀ

"ବନେ ମୟୂରା ଗଗନେଷୁ ମେଘାଃ
ଲକ୍ଷାନ୍ତରେ ଅର୍କମଜଳେଷୁ ପଦ୍ମାଃ
ଇନ୍ଦୁର୍ଦ୍ୱିଲକ୍ଷଂ କୁମୁଦଂନ୍ତୁ ନୈଂଯେୟଃ
ଯାସସ୍ୟ ପ୍ରୀତି ନହିଁତସ୍ୟ ଦୂରମ୍ ।" ର ଅନୁରୂପ

ବର୍ଣ୍ଣନା ପ୍ରେମ ସୁଧାନିଧି କାବ୍ୟରେ ଉପେନ୍ଦ୍ରଭଞ୍ଜ କରିବାକୁ ଯାଇ ଲେଖିଛନ୍ତି:—

"ଦୂରେ ଥିଲେ ପାଶେ ଅଛୁ ଏହାଥିକୁ ଘେନ
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।"
(ପ୍ରେମସୁଧାନିଧି—୧୪।୪)

ଭୂଗୋଳ, ଇତିହାସ, ଜ୍ୟୋତିଷ ଓ ଆୟୁର୍ବେଦ, ସ୍ମୃତି, ମୀମାଂସା, ନୀତିଶାସ୍ତ୍ର, ଗୀତା, ଉପନିଷଦ୍ ପ୍ରଭୃତିରେ ତାଙ୍କର ପ୍ରବେଶ ମଧ୍ୟ ଥିଲା । ବୈଦେହୀଶ ବିଳାସରେ ଆୟୁର୍ବେଦର ପ୍ରଭାବ ସ୍ପଷ୍ଟ । ଉପେନ୍ଦ୍ର ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି:—

"କେଉଁ ବଡ଼ ପଣେ । ବନସ୍ପ ନ ଜାଣି ହୁଅ କଳ କଳ
ରହ ସକଳେ ମଉନେ କ୍ଷଣେ ହେ ।
ବଷେ କ ବୋଲୁଁ ବୋଲେ ଭିଶତ ବ୍ୟାଧିରାଜା
ଅନ୍ତର୍ଗତେ ଜାତ । ବୈଦେହୀପାଚନ ରସରନ୍ନାଙ୍କର
ବରଚନକୁ ଅର୍ଚ୍ଚନ ଶତ୍ରେ ହେ ।"
(ବୈଦେହୀଶ ବିଳାସ—୩୫)

ବାତ୍ସ୍ୟାୟନଙ୍କ କାମ ଶାସ୍ତ୍ରରେ ମଧ୍ୟ ଉପେନ୍ଦ୍ରଙ୍କର ସମ୍ୟକ୍ ପ୍ରବେଶ ଥିଲା । ସେହି ନିୟମରେ ସେ କୈଶୋର, ଯୌବନ, ଉତ୍କଣ୍ଠା, ବିରହ, ମିଳନ, ଚିତ୍ରପଟ ଦର୍ଶନ ଓ ସ୍ୱପ୍ନ ମିଳନ, କେଳିଗୃହ ମଣ୍ଡନ, ମଧୁଶଯ୍ୟା ବର୍ଣ୍ଣନ ଓ ସମ୍ଭୋଗରେ ବାତ୍ସ୍ୟାୟନଙ୍କ କାମ ଶାସ୍ତ୍ରକୁ ଅନୁସରଣ କରିଛନ୍ତି । ଲାବଣ୍ୟବତୀର କେଳିଗୃହ ମଣ୍ଡନରେ ସେ ଯେଉଁ ଚିତ୍ର ଲେଖିଛନ୍ତି ତାହା କାମଶାସ୍ତ୍ରାନୁମୋଦିତ ।

"ହରିବାରଣ ଖୁରିତଳେ ସେ ହାର ହୀରାବରଣକୁ ଥୋଇ
ଯତନ ପଲଙ୍କ ଅଙ୍କରେ କୋମଳ ଶେଯ ଶେଯାଇ
ସେ ଆଳୀ, ବିଶେଷତ ଶଙ୍କା ମନେ ଘେନି,
ନାଗେଶ୍ୱର କେଶରେ ମୁରୁଲୀ ଦେଇ ସିଞ୍ଚିଲେ କର୍ପୂର ଧୂଳି ।"
(ଲାବଣ୍ୟବତୀ—୩୧।୨୪)

ଦିବାରତି କାମ ଶାସ୍ତ୍ର ନିଷିଦ୍ଧ । ଉପେନ୍ଦ୍ର ଏହି ମତର ବଶବର୍ତ୍ତୀ ହୋଇ ନାୟକ ମୁଖରେ କହିଅଛନ୍ତି:—

"ଦିବସ କାଳରେ ରତି ସିନା ନାହିଁ କରିଛୁ ଦଇବ ।"

ପୁଣି ଉପେନ୍ଦ୍ର ଭଞ୍ଜଙ୍କର ବର୍ଣ୍ଣନା "ବାତ୍ସ୍ୟାୟନ ଶାସ୍ତ୍ର ପଢ଼ା" ଓ ରସିକ ହାରାବଳୀର ବର୍ଣ୍ଣନା ବାତ୍ସ୍ୟାୟନ କାମଶାସ୍ତ୍ରାନୁସାରେ କରିଅଛନ୍ତି । ଏଣୁ ସେ ଗାଇଅଛନ୍ତି:—

"ବାତ୍ସ୍ୟାୟନ ଋଷିଙ୍କି ଯେ ଏ ରସ ଗୋଚର
ଗୀତେ କହେ ଉପଇନ୍ଦ୍ର ଭଞ୍ଜ ବୀରବର ।"

ଭଞ୍ଜ ମଧ୍ୟ ସାହିତ୍ୟ ଦର୍ପଣକାର ବିଶ୍ୱନାଥ କବିରାଜ ପ୍ରଭୃତିଙ୍କ ଭଳି ବର୍ଣ୍ଣନା ଦେବାକୁ ଭୁଲି ନାହାନ୍ତି । ବିଶ୍ୱନାଥଙ୍କ ଭାଷାରେ:—

ଲତା କୁଞ୍ଜ ଗୁଞ୍ଜନ୍ମଦ ବଦଳି ପୁଞ୍ଜଂ ଚପଳୟନ୍ ।
ସମାଲିଙ୍ଗନ୍ନଙ୍ଗଂ ଦ୍ରୁତିମାର୍ଜିତ ନଙ୍ଗମ୍ ପ୍ରବଳୟନ୍ ॥
ମରୁନ୍ମନ୍ଦଂ ମନ୍ଦଂ ଦଳିତ ମନ୍ଦଂ ତରଳୟନ୍ ।
ରଜୋ ବୃନ୍ଦଂ ବିଳନ୍ କିରତି ମକରନ୍ଦଂ ଦିଶି ଦିଶି ॥

ବିଭିନ୍ନ ବର୍ଣ୍ଣନାରେ ଅଳଙ୍କାର ଶାସ୍ତ୍ର ନିୟମାନୁସାରେ ଯାହା ରହିବାର କଥା, ଉପେନ୍ଦ୍ର ତହିଁରୁ ବ୍ୟତିକ୍ରମ କରି ନାହାନ୍ତି । ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ବନ ବର୍ଣ୍ଣନାରେ ସେ (ବ୍ୟାଘ୍ର, ହସ୍ତୀ, ସିଂହ, ବୃକ୍ଷ, କାକ, କପୋତ) ଉପବନ ବର୍ଣ୍ଣନା; (ଲାବଣ୍ୟବତୀ)ରେ (ସବୁ ଫୁଲ, ଫଳ ଲତା, ବୃକ୍ଷ, କୋକିଳ, ଭ୍ରମର), ପର୍ବତ ବର୍ଣ୍ଣନା (ବୈଦେହୀଶ ବିଳାସ, ସୁଭଦ୍ରା ପରିଣୟ)ରେ (ମେଘ, ଔଷଧ, ଧାତୁ, ହଂସ, ଝରଣା, ଶୃଙ୍ଗ, ରତ୍ନ, ବନଜନ୍ତୁ); ଚନ୍ଦ୍ର ବର୍ଣ୍ଣନା (ପ୍ରାୟ ସମସ୍ତ କାବ୍ୟ)ରେ (କୁଳଟା, ପଦ୍ମ, ଚୈର, ସମୁଦ୍ର, କଇଁ, ଚକୋର, ଚନ୍ଦ୍ରକାନ୍ତ ମଣି, ସୂର୍ଯ୍ୟ ବର୍ଣ୍ଣନା)ର (ଅରୁଣିମା, ସୂର୍ଯ୍ୟ ମଣ୍ଡଳ, ପଦ୍ମ, ତାରା, ଚନ୍ଦ୍ର, ଚୈର) ଓ ବସନ୍ତ ପ୍ରଭୃତି ଋତୁ ବର୍ଣ୍ଣନାରେ ଶାସ୍ତ୍ର ନିୟମାନୁସାରେ ବର୍ଣ୍ଣନା ପାଠକ ଦେଖାଇଛନ୍ତି । ବସନ୍ତ ବର୍ଣ୍ଣନା ଆସିଲେ କୋକିଳ ମଳୟ ପବନ, କୋମଳ ପତ୍ର, ମାଳତୀ ଫୁଲ ଆପେ ଆପେ ଆସି ଯାଇଛି । ସରସ୍ୱତୀ କଣ୍ଠାଭରଣର ରଚୟିତା ଭୋଜରାଜଙ୍କ ନିର୍ଦ୍ଦେଶ ଅନୁଯାୟୀ ସେ ଶୃଙ୍ଗାର ରସକୁ ସୃଷ୍ଟିର ଅଙ୍ଗୀ ରସ ଭାବରେ ବର୍ଣ୍ଣନା କରିଅଛନ୍ତି । ଅଧ୍ୟାପକ ଗଙ୍ଗାଧର ବଳଙ୍କ ଭାଷାରେ କହିବାକୁ ଗଲେ:—

"ନାନା କାରଣରୁ ଏ ଯୁଗର କାବ୍ୟର କଥାବସ୍ତୁ ବା ପ୍ରସଙ୍ଗ ପରିକଳ୍ପନାରେ ବୈଚିତ୍ର୍ୟ ନାହିଁ । ବର୍ଣ୍ଣନା ଭାଷା ଓ ଅଳଙ୍କାରରେ ଅଗାଧ୍ୟ କବିତ କୃତି ମତା ପ୍ରଦର୍ଶନ କରିବାକୁ ଯାଇ କାବ୍ୟକାରଗଣ

ଚରିତ୍ର ସୃଷ୍ଟି ଓ କଥାବସ୍ତୁର ସ୍ୱାଭାବିକତା ଓ ଗତିଶୀଳତା ଉପରେ ଆଦୌ ଦୃଷ୍ଟି ଦେଇ ପାରିନାହାନ୍ତି । ଆଡ଼ମ୍ବରପୂର୍ଣ୍ଣ ଦୁରୂହ ଭାଷା, ଅଙ୍ଗୀରସ ଭାବରେ ଶୃଙ୍ଗାର ରସର ମାତ୍ରାଧିକ ପରିବେଷଣ, ପ୍ରଚଳିତ ଅପ୍ରଚଳିତ ନାନାବିଧ ଅଳଙ୍କାର (ଶବ୍ଦ ଓ ଅର୍ଥ) ପ୍ରୟୋଗ ଜନିତ ଚମତ୍କାରିତା ବା ବୈଚିତ୍ର୍ୟ, ମହାକାବ୍ୟ ସୁଲଭ ନାନା ବିଧ ବର୍ଣ୍ଣନା, ନାନା ଛନ୍ଦ ଓ ବନ୍ଧର ପ୍ରୟୋଗ, ଶ୍ଳେଷ, ଆଶ୍ରୟ, ବର୍ଣ୍ଣ ଓ ଧ୍ୱନି ଚିତ୍ରର ବ୍ୟବହାର ଏ ଯୁଗର କାବ୍ୟ କଳାର ବିଶେଷତ୍ୱ ।"

କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଏହି ଯୁଗର ଏକ ଯୋଗ୍ୟ ଦାୟାଦ, ଶ୍ରେଷ୍ଠ ଆଳଙ୍କାରିକ କବି । ନାନା ଆହରଣ ସତ୍ତ୍ୱେ ନିଜର ପ୍ରତିଭା ବଳରେ ସେ ତାହାର ସାର୍ଥକ ସମୀକରଣ କରି କଥାବସ୍ତୁରେ ନ ହେଲେ ହେଁ ବର୍ଣ୍ଣନାରେ, କଳ୍ପନାରେ, ଚରିତ୍ର ଚିତ୍ରଣରେ ଓ ଭାବ ପ୍ରକାଶରେ ବୈଚିତ୍ର୍ୟ ଦେଖାଇଛନ୍ତି । ସୁଭଦ୍ରା ପରିଣୟ କାବ୍ୟରେ ସେ ସୁଭଦ୍ରାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି:—

"ସୁମୁଖୀ ଲପନ ଶୋଭା କାନ୍ତିନାଶି ହେଲି ।
ସୁମନପୁରେ ପଙ୍କିଳପଥେ ଯାଉଥିଲି ଯେ ॥
ସୋପାନ ବିଧୁର ଶଶୀପରେ ପାଦ ଦେଲି ।
ସେ ପଙ୍କ କଳଙ୍କ ହୋଇ ଅଙ୍କରେ ରହିଲି ଯେ ॥"

(ସୁଭଦ୍ରା ପରିଣୟ—୧।୫୭-୫୮)

ଭାବ ପ୍ରକାଶରେ ବିଚିତ୍ରତା ପ୍ରଦର୍ଶନ ମଧ୍ୟ ଉପେନ୍ଦ୍ର ଭଞ୍ଜଙ୍କର ରହିଛି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ସେ ହର୍ଷ ଓ ଆନନ୍ଦକୁ ବର୍ଣ୍ଣନା କରିବାକୁ ଯାଇ ପ୍ରକାଶ କରିଛନ୍ତି:—

"...କୁମୁଦ ବକାଶ ଭୁଟି ଭୁଟି ଯାଇ ପଦ୍ମ ଫୁଟି ଫୁଟି ଆସେ ।
ହରଷ ବରସ ପାଲଟି ପାଲଟି ମଧୁକର ବାଡ଼ କରେ ॥"
(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ—୨୯ ଛାନ୍ଦ)

ଏହିପରି ଭାବେ ଆଲୋଚନା କଲେ ଜଣାଯାଏ ଯେ ଉପେନ୍ଦ୍ର ଥିଲେ ଏକ ବହୁଶାସ୍ତ୍ରଦର୍ଶୀ । ଅଧୀତ ଶାସ୍ତ୍ର ଜ୍ଞାନ ବଳରେ ସେ ଯେଉଁ କଳାର-କୋଣାର୍କ ନିର୍ମାଣକଲେ, ତାହା ଏବେ ମଧ୍ୟ ଆମକୁ ଚମତ୍କୃତକରେ-ଆଶ୍ଚର୍ଯ୍ୟ କରେ ।

—:o:—

ଅରୁଣ ପ୍ରିଣ୍ଟିଙ୍ଗ୍ ଓ୍ୱାର୍କସ୍, ବ୍ରହ୍ମପୁର-୨ (ଗଞ୍ଜାମ)